# କଣ୍ଢେଇ ଯାତ୍ରା



ସଂକଳକ : ଡକ୍ଟର ହେମନ୍ତ କୁମାର ଦାସ, ଡକ୍ଟର ସୁବାସ ଚନ୍ଦ୍ର ବେହେରା

# କଣ୍ଢେଇର ଯାତ୍ରା

(ଶିଶୁ ଗଳ୍ପ ସଂକଳନ)

ସଂକଳକ

ଡଃ ହେମନ୍ତ କୁମାର ଦାସ

ଡଃ ସୁବାସ ଚନ୍ଦ୍ର ବେହେରା

ପ୍ରକାଶକ

ମଣି ମୁକୁତା ପ୍ରକାଶନୀ

ବିଶ୍ୱନାଥ ମନ୍ଦିର ପରିସର

ବାଲୁବଜାର, କଟକ-୨

# ଖଣ୍ଢେଇ ଯାତ୍ରା

(ଶିଶୁ ଗଳ୍ପ ସଂକଳନ)

| | |
|---|---|
| ସଂକଳକ | ଡକ୍ଟର ହେମନ୍ତ କୁମାର ଦାସ<br>ଡକ୍ଟର ସୁବାସ ଚନ୍ଦ୍ର ବେହେରା |
| ପ୍ରକାଶକ | ମଣି ମୁକୁତା ପ୍ରକାଶନୀ<br>ବିଶ୍ୱନାଥ ମନ୍ଦିର ପରିସର, ବାଲୁବଜାର, କଟକ-୨ |
| ପ୍ରଚ୍ଛଦ ଓ ଅଳଙ୍କରଣ | ପୂର୍ଣ୍ଣ ରାୟ |
| ଅକ୍ଷର ସଜ୍ଜା | ସାରଳା ପ୍ରିଣ୍ଟର୍ସ, ମାନସିଂହପାଟଣା, କଟକ-୮ |
| ମୁଦ୍ରଣ | ଜନୁପ୍ ଗ୍ରାଫିକ୍ସ, ଓଡ଼ିଆବଜାର, କଟକ-୧ |
| ପ୍ରଥମ ପ୍ରକାଶ | ୨୦୦୫, ଦଶହରା |
| ମୂଲ୍ୟ | ଟ. ୪୦.୦୦ |

## KHANDHEI JATRA

(A Collection of childrens' story)

| | |
|---|---|
| By | **Dr. Hemanta Kumar Das**<br>**Dr. Subash Chandra Behera** |
| Published by | **Mani Mukuta Prakashani**<br>Biswanath Mandir Campus,<br>Balubazar, Cuttack-2 |
| Cover & Illustration | **Purna Roy** |
| D.T.P. | **Sarala Printers,**<br>Mansingpatna, Cuttack-8 |
| Printed at | **Janup Graphics**<br>Oriya Bazar, Cuttack-1 |
| First Edition | Dussera, 2005 |
| Price | **Rs. 40.00** |

# ଆମ କଥା

ଖୁସିର କଥା 'ମଣି ମୁକ୍ତା ପ୍ରକାଶନୀ' ପକ୍ଷରୁ 'କଣ୍ଢେଇ ଯାତ୍ରା' ଶିଶୁ ଗଳ୍ପ ସଙ୍କଳନ ପ୍ରକାଶ ପାଇଛି । ଏହା ହେଉଛି ମଣି ମୁକ୍ତା ପ୍ରକାଶନୀ ପକ୍ଷରୁ ପ୍ରକାଶିତ ଦ୍ୱିତୀୟ ଶିଶୁଗଳ୍ପ ସଙ୍କଳନ ।

ଶିଶୁ ସାହିତ୍ୟିକମାନେ ଅନେକ ସୁଚିନ୍ତିତ ଉପଦେଶ ଦେଇଛନ୍ତି । ବିଶିଷ୍ଟ ଶିଶୁସାହିତ୍ୟିକ ଶ୍ରୀ ନଦୀୟା ବିହାରୀ ମହାନ୍ତି, ଶ୍ରୀ ରାମପ୍ରସାଦ ମହାନ୍ତି (ଜହ୍ନରିଭାଇ), ଡକ୍ଟର ଜଗନ୍ନାଥ ମହାନ୍ତି, ଡକ୍ଟର ମହେଶ୍ୱର ମହାନ୍ତି, ଡକ୍ଟର ନାରାୟଣ ସାହୁ, ଡକ୍ଟର ପ୍ରସନ୍ନ କୁମାର ମିଶ୍ର, ସ୍ନେହଲତା ମହାନ୍ତି, ମନୋରମା ମହାପାତ୍ର, ଦାଶ ବେନହୁର, ଡକ୍ଟର ଲାବଣ୍ୟ ଚନ୍ଦ୍ର ସାହୁ, ଡକ୍ଟର ସୂର୍ଯ୍ୟମଣି ବେହେରା, ଶ୍ରୀମତୀ ଗୀତା ହୋତା ପ୍ରମୁଖଙ୍କ ସୁଚିନ୍ତିତ ପରାମର୍ଶ ପାଇଁ ଆମେ ସେମାନଙ୍କ ନିକଟରେ କୃତଜ୍ଞ । ଉକ୍ତ ସଙ୍କଳନଟିରେ ପ୍ରକାଶିତ ଗଳ୍ପର ଲେଖକମାନଙ୍କ ପାଖରେ ଆମ ପ୍ରକାଶନୀ କୃତଜ୍ଞ ।

ପିଲାମାନଙ୍କୁ ଆନନ୍ଦ ଦେବା ସଙ୍ଗେ ସଙ୍ଗେ ଶିକ୍ଷା ଦେବାର ମହତ ଉଦ୍ଦେଶ୍ୟ ରଖି ଉକ୍ତ ସଙ୍କଳନଟିର ଆତ୍ମ ପ୍ରକାଶ ଘଟିଛି । କୌଣସି ଭୁଲ୍ ଥିଲେ ସହୃଦୟ ପାଠକ କ୍ଷମାଦେବା ସହିତ ଆମ ପ୍ରକାଶନୀକୁ ପତ୍ରଦ୍ୱାରା ଜଣାଇବାକୁ ଅନୁରୋଧ । ଉକ୍ତ ଶିଶୁ ଗଳ୍ପ ସଙ୍କଳନଟି ସମାଜର ଉପକାର କରିପାରିଲେ ଆମ ଶ୍ରମ ସାର୍ଥକ ହୋଇଛି ବୋଲି ଭାବିବୁ ।

ଡକ୍ଟର ହେମନ୍ତ କୁମାର ଦାସ
ଡକ୍ଟର ସୁବାସ ଚନ୍ଦ୍ର ବେହେରା

# ସୂଚୀପତ୍ର

# ସର୍ଦ୍ଦାର ଭୀମ ସିଂ

● ନିଦୀୟା ବିହାରୀ ମହାନ୍ତି

ଡେଙ୍ଗୁରାବାଲା ଗାଁ ମଝି ଦାଣ୍ଡରେ ଡେଙ୍ଗୁରା ପିଟି ପିଟି ଜଣେଇ ଦେଲା– ‘‘ଏତଦ୍ଵାରା ଗ୍ରାମ ବାସୀଙ୍କୁ ଜଣାଇ ଦିଆ ଯାଉ ଅଛି କି – ଆଜିଠାରୁ କେହି ନୂଆ



କିମ୍ବା ପୁରୁଣା ଗଛ ସବୁ କାଟିବେ ନାହିଁ । କାଟିଲେ ସେ ମାନଙ୍କୁ କଠିଣ ଦଣ୍ଡ ଦିଆଯିବ'' ହୁକୁମ୍ ''ସର୍ଦ୍ଦାର ଭୀମ ସିଂ'' ।

ଏ କଥା ଶୁଣି ଗାଁର ପିଲାଠାରୁ ବୁଢ଼ାଯାଏ ଡେଙ୍ଗୁରା ବାଲାକୁ ବେଢ଼ିଯାଇ ପଚାରିଲେ – ''ହଇହୋ ତମକୁ ଯୋଇ ସର୍ଦ୍ଦାର ଭୀମ ସିଂ ପଠେଇଛନ୍ତି ସିଏ କ'ଣ ଆମ ଗାଁ ମୁଖିଆ ନା ପଞ୍ଚାୟତ୍‌ର ମାଲିକ ?''

ଡେଙ୍ଗୁରା ବାଲା ହାତଯୋଡ଼ି ଉତ୍ତର ଦେଲା – ''ଆଜ୍ଞା ମୁଁ ମୂଲିଆ ଲୋକ, ଦିନ ସାରା ଡେଙ୍ଗୁରା ପିଟି ସଞ୍ଜକୁ ମଜୁରୀଧରି ଘରକୁ ଯିବା ମଣିଷ, ମତେ ଯିଏ ଯାହା ବରାଦ କରୁଛି ମୁଁ ତା' କରିବି । ମୋ ଉପରେ ରାଗ କରନ୍ତୁ ନାହିଁ ।''

ଭିଡ ଭିତରୁ ଜଣେ ଯୁବକ ବାହାରି ପଡ଼ି କହିଲା – ''ତମେ ଯୋଉ ସର୍ଦ୍ଦାର ଭୀମ ସିଂଙ୍କ କାମରେ ବୁଲି ବୁଲି ଡେଙ୍ଗୁରା ଦଉଚ ମୂଲ ନେଲା ବେଳେ ତାଙ୍କୁ କହିବ - ଗାଁ ବାଲା କହିଲେ ଗାଁରେ ଯେତେ ଗଛ ସବୁ ଉଠିଚି ସିଏ ନା ତା' ଗୋସ୍‌ବାପା କ'ଣ ସେ ସବୁ ଲଗେଇଥିଲେ – ଗାଁ ବାଲା ମିଳି ମିଶି ଗଛ ସବୁ ଲଗେଇଛନ୍ତି – ତାଙ୍କର ଦରକାର ବେଳେ କାଟିବେ । ଗଛ ପାଇଁ ତାଙ୍କ ମୁଣ୍ଡ ବଥଉଚି କାହିଁକି ?''

ଡେଙ୍ଗୁରା ବାଲା ଉତ୍ତର ଦେଲା – ''ଠିକ୍ ଅଛି ଆଜ୍ଞା - ଆପଣଙ୍କ କଥା ତାଙ୍କ ପାଖରେ ପହଞ୍ଚେଇ ଦେବି । ମତେ ବାଟ ଛାଡନ୍ତୁ, ମୁଁ ଯାଏଁ !''

ଡେଙ୍ଗୁରା ବାଲା ଗାଁ ଟା ସାରା ବୁଲି ବୁଲି ଡେଙ୍ଗୁରା ଦେଇ ସଂଜରେ ଯାଇ - ଗାଁ ବାଲାଙ୍କ ମତାମତ ସର୍ଦ୍ଦାର ଭୀମ ସିଂଙ୍କୁ ଜଣେଇ ଦେଲା ।

ସେ ସବୁ ଶୁଣି କହିଲେ – ''ମୁଁ ଠିକ୍ ଜାଣିଥିଲି ଏହିପରି ଏକ ପ୍ରତିକ୍ରିୟା ହେବ । ଏହା ଏକ ଶୁଭ ସୂଚନା ।''

ଡେଙ୍ଗୁରା ବାଲା ଭୀମ ସିଂହଙ୍କ କଥାରୁ କିଛି ବୁଝି ପାରିଲା ନାହିଁ – ସେ ତା' ମୂଲ ଗଣ୍ଡାକ ଧରି ବାଟେ ବାଟେ ଘରକୁ ଫେରିଲା ।

ଏଣେ ଘରେ ବାହାରେ ଦାଣ୍ଡରେ, ଘାଟରେ ସବୁଠି ଆଲୋଚନା, ଏ ସର୍ଦ୍ଦାର ଭୀମ ସିଂଟି କିଏ ?

କିଏ କହୁଥାଏ "ସେ ପଧାନ ସାହି ଭୀମା ନୁହେଁତ !"

ଆଉ କିଏ କହୁଥାଏ "ଆରେ ସେ କୁଢିନେତା ଭୀମ ନାହାକ ହେଇଥିବ ମ । ନେତାଗିରି ଦେଖେଇବାକୁ ନାଁ ଆଗରେ ଗୋଟାଏ ସର୍ଦ୍ଦାର ପଦ ଯୋଡ଼ି ଦେଇ ଗାଁ ବାଲାଙ୍କୁ ବୋକା ବନେଇବାକୁ ବସିଛି ।"

ପୁରୁଣା ଲୋକେ କହୁଥାଆନ୍ତି – "ତା' ସାଙ୍ଗିଆତ ନାହାକ, – ସିଂ ବୋଲି କ'ଣ ବଦଳେଇ ଦେଇ ବାହାଦୁରୀ ଦେଖାଉଚି ?"

ଟୋକାଟାକଳିଆମାନେ କହି ପକଉଥାଆନ୍ତି – "ଲୋକଟା ଭାବୁଚି ସିଂ ସାଙ୍ଗିଆଟା ଲଗେଇ ଦେଲେ ସିଂହ ଭଳି ତାକୁ ଲୋକେ ଡରିବେ ।" ଏମିତି ସବୁ ଟୁପୁରୁ ଟାପର ହେଇ ଲୋକଟାକୁ ଖୋଜିବାରେ ସମସ୍ତେ ଲାଗି ପଡ଼ିଲେ ।

ନିତି ଲୋକେ ସଞ୍ଜବେଳେ ଏକାଠି ହୁଅନ୍ତି, ଅଥଚ କେହି ଲୋକଟାର ସଠିକ୍ ସନ୍ଧାନ ଦେଇ ପାରନ୍ତି ନାହିଁ ।

ଦିନ ପରେ ଦିନ ଗଡ଼ି ଚାଲିଲା- ସପ୍ତାହେ ଯାଇ, ମାସେ ହେଲା, ତଥାପି ସର୍ଦ୍ଦାର ଭୀମ ସିଂଙ୍କର ସଂପର୍କରେ କେହି କିଛି ଖୋଜ ଖବର ପାଇଲେ ନାହିଁ ।

ଯୁବକ ସଂଘର ଯୁବକ ମାନେ, ଗାଁ ବାଲାଙ୍କର ଦିନେ ସଭାଟାଏ ଡାକିଲେ - ଲୋକେ ଏକାଠି ହେଲେ - ସ୍ଥିର କରାଗଲା, ଆସନ୍ତା କାଲି ରବିବାର - ଗାଁ ଯାକ ଲୋକେ କଟୁରୀ କୁରାଢ଼ୀ ଧରି ତାଙ୍କ ଘର ପାଖରେ ଥିବା ବଡ ବଡ ଗଛରୁ ସବୁଡାଳ କାଟିବେ - ଯଦି ପ୍ରକୃତରେ କେହି ସର୍ଦ୍ଦାର ଭୀମ ସିଂ ଥାଏ ନିଶ୍ଚେ ବାହାରିବ ଆମକୁ କଠିଣ ଦଣ୍ଡ ଦବାକୁ ।

ସେତିକି ବେଳେ ମୁକାବିଲା ହବ ଲୋକଟା ସାଙ୍ଗରେ... । ଗାଁବାଲାଙ୍କ ମନକୁ କଥାଟା ପାଇଗଲା ।

ରବିବାର ସକାଳ, ଆକାଶରେ ମେଘ ଘୋଟି ଆସିଲା, ଧୀରେ ଧୀରେ ପବନର ବେଗ ବଢ଼ିବାକୁ ଲାଗିଲା ।

ସେ ସବୁ ପ୍ରତି ଭ୍ରୁକ୍ଷେପ ନକରି ଗାଁ ବାଲାଏ ଦଳ ଦଳ ହଳ ହଳ ହୋଇ ବୁଲି ଗଛରେ ଚୋଟ ମାରିବାକୁ ଆରମ୍ଭ କରି ଦେଲେ । ଛୋଟ ବଡ଼ ଅନେକ ଡାଳ

ଗଦା ହୋଇ ଗଲା ଗାଁ ସାରା । ଏଣେ ପବନର ବେଗ ବଢ଼ିବାରେ ଲାଗିଥାଏ... କିନ୍ତୁ ଭୀମ ସିଂର ଦେଖା ନାହିଁ । ହଠାତ୍ ରେଡ଼ିଓ, ଦୂରଦର୍ଶନରେ ପ୍ରଚାର କରାଗଲା ପାଖ ସମୁଦ୍ର ଭିତରୁ ଝଡ଼ ବାତ୍ୟା ମାଡ଼ି ଆସୁଛି... !!

ଚାହୁଁ ଚାହୁଁ ଚାରିଆଡେ ମେଘ ଘୋଟି ଗଲା । ବର୍ଷାର ବେଗ ସହିତ ପବନର ବେଗ ବଢ଼ିବାକୁ ଲାଗିଲା ।

ଚାଳଘରର ଛଣ ଛପର ବତା, ସହିତ ଆକାଶ ମାର୍ଗରେ ଶୂନ୍ୟେ ଶୂନ୍ୟେ ଉଡ଼ିବାକୁ ଲାଗିଲା ।

ଲୋକେ ଗଛ କାଟିବେ କ'ଣ ଧାଇଁଲେ ନିଜ ନିଜର ଘରଦ୍ୱାର, ଧନ ସଂପତ୍ତି, ଗାଈ ଗୋରୁ ମାନଙ୍କୁ ରକ୍ଷା କରିବା ପାଇଁ । ମାତ୍ର ଘଣ୍ଟାକ ଭିତରେ ସାରା ମଙ୍ଗଳପୁର ଗାଁଟା ଶ୍ରୀହୀନ ହୋଇଗଲା ।

ଗତ ବାତ୍ୟାରେ ଯେଉଁ ଗଛ ସବୁ ଭାଙ୍ଗି ପଡ଼ିଥିଲା, ବାକି ଯେତିକ ଥିଲା, ସେଥିରେ ଥିବା ଡାଳ ସବୁ କାଟି ଦିଆଯିବାରୁ ଏଥର ବାତ୍ୟା ଆହୁରି ଭୟଙ୍କର ରୂପ ଧାରଣ କଲା ।

ବାତ୍ୟା ପ୍ରକୋପ କମିଲା ପରେ, କେତେଜଣ ସ୍କୁଲ ଛାତ୍ରଙ୍କ ଗହଣରେ ଜଣେ ମଧ୍ୟ ବୟସ୍କ ଭଦ୍ରବ୍ୟକ୍ତି ବୁଲି ବୁଲି ବାତ୍ୟା ପୀଡ଼ିତ ଗ୍ରାମ ବାସୀମାନଙ୍କୁ ସାନ୍ତ୍ୱନା ଦେଇ ଦେଇ ଘୁରି ବୁଲୁଥାନ୍ତି । ସାଙ୍ଗରେ ଥିବା ଛାତ୍ର ମାନଙ୍କୁ ଗ୍ରାମବାସୀ ମାନଙ୍କ ପରିଚୟ ପଚାରି ବୁଝୁ ଥାଆନ୍ତି ।

ହଠାତ୍ କେତେ ଜଣ୍ ଗ୍ରାମବାସୀ ଛାତ୍ର ମାନଙ୍କୁ ପଚାରିଲେ - ''ପିଲେ ଏ ଭଦ୍ର ଲୋକ ଆମ ଗାଁ ହାଇସ୍କୁଲର ନୂଆ ହେଡମାଷ୍ଟ୍ରେତ ।'' ଛାତ୍ରମାନେ ଉତ୍ତର ଦେଲେ, ''ଆଜ୍ଞା ହଁ ।''

ଜଣେ ଯୁବକ ହେଡ୍‌ମାଷ୍ଟ୍ରଙ୍କୁ ପ୍ରଶ୍ନ କଲେ– ''ଆପଣଙ୍କୁ ଆଜ୍ଞା ଆମେ ହେଡ୍‌ସାର୍ ଭାବେ ଜାଣୁ, ଦୟାକରି ଆପଣଙ୍କ ନାମଟି କହିବେ କି ?''

ଭଦ୍ରବ୍ୟକ୍ତି ଉତ୍ତର ଦେଲେ

''ସର୍ଦ୍ଦାର ଭୀମ ସିଂ...''

ଉପସ୍ଥିତ ଗ୍ରାମ ବାସୀମାନେ, ଆଶ୍ଚର୍ଯ୍ୟ ଚକିତ ହୋଇ ସମ ସ୍ୱରରେ କହିଉଠିଲେ - ''କ୍ଷମା କରନ୍ତୁ ଆଜ୍ଞା... ଆପଣଙ୍କୁ ଆମେ ଭୁଲ ବୁଝି ଯେଉଁ ଅପରାଧ କରିଛୁ, ଆଜି ପ୍ରକୃତି ଆମକୁ ସେଥିପାଇଁ କଠିଣ ଦଣ୍ଡରେ ଦଣ୍ଡିତ କରିଛି ।''

ହେଡମାଷ୍ଟର ମହୋଦୟ ସମସ୍ତଙ୍କୁ ସମ ବେଦନା ଜଣାଇ କହିଲେ –

''ଶୁଣନ୍ତୁ ଆଜ୍ଞା, ମୁଁ ମୋର କାର୍ଯ୍ୟକାଳ ମଧ୍ୟରେ ଯେଉଁ ବିଦ୍ୟାଳୟରେ କାର୍ଯ୍ୟ ଭାର ଗ୍ରହଣ କରିଛି ସେଠି ସମସ୍ତଙ୍କୁ ପରିବେଶ ବିଷୟରେ ସଚେତନ କରିବା ଲାଗି- ଏହିପରି ଏକ ଉଦ୍ୟମ କରି ଆସିଛି । ଅନେକେ ମୋତେ ପ୍ରଥମେ ଭୁଲ ବୁଝିଛନ୍ତି - ମାତ୍ର ପ୍ରାକୃତିକ ବିପର୍ଯ୍ୟୟର ସମ୍ମୁଖିନ ହେଲା ପରେ- ''ସର୍ଦ୍ଧାର '' ଆଖ୍ୟା ଦେଇ ସମ୍ମାନୀତ କରିଛନ୍ତି । ମୁଁ ଡେଙ୍ଗୁରା ବାଲାଠାରୁ ଆପଣଙ୍କର ତୀବ୍ର ପ୍ରତିକ୍ରିୟା ବିଷୟରେ ସୂଚନା ପାଇଥିଲି । ପ୍ରକୃତିର ସନ୍ତୁଳନ ରକ୍ଷା ନକଲେ କି ଭୟଙ୍କର ପରିସ୍ଥିତି ହୁଏ- ସେ ବିଷୟରେ ପ୍ରତ୍ୟେକ୍ଷ ଜ୍ଞାନ ଦେବା ଲାଗି ଏ ଛାତ୍ରମାନଙ୍କୁ ସାଙ୍ଗରେ ଧରି ବୁଲୁଛି । କାରଣ ଏଇମାନେ ହିଁ ଏ ଦେଶର ରକ୍ଷାକର୍ତ୍ତା । ଆଗାମୀ ଦିନର ନାଗରିକ ।''

ଗ୍ରାମବାସୀ ମାନେ କହି ଉଠିଲେ - ପ୍ରତ୍ୟେକ ଶିକ୍ଷକ, ଆପଣଙ୍କ ଆଦର୍ଶରେ ଅନୁପ୍ରାଣୀତ ହୁଅନ୍ତୁ, ଏହାହିଁ ଆମର ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା !! ■

**ତଳ ତେଲଙ୍ଗାବଜାର, କଟକ-୯**

# ବଲ୍ ଦେଲି ଗଡ଼େଇ

• ଡକ୍ଟର ପ୍ରସନ୍ନ କୁମାର ମିଶ୍ର

ବୀରର ମା'ଙ୍କ ପାଇଁ ସବୁଠୁ କଷ୍ଟକର କାମ ହେଉଛି ଚୂନା ମାଛ ବାଛିବା । ଅଧିକିଲେ ମାଛ ପାଇଁ ପାଖାପାଖି ଘଣ୍ଟେ ମୁଣ୍ଡ ନୋଇଁ ବସିବାକୁ ହେବ, ଗୋଟି ଗୋଟି କରି ସବୁ ମାଛର ପିତ୍ତ ବାହାର କରିବାକୁ ହେବ । ଶଶୁର ବୁଢ଼ାଙ୍କ ପସନ୍ଦ ଚୂନାମାଛ । କିନ୍ତୁ ଘରେ ସାହାଯ୍ୟ କରିବାକୁ କେହି ନାହିଁ ଚାରିବର୍ଷର ପୁଅ ବୀର ଛଡ଼ା । ମାଛ ପୁଟୁଳାଟା ହାତକୁ ବଢ଼େଇ ଦେଇ ଶଶୁର ବୁଢ଼ା ସେଇ ଦାଣ୍ଡରୁ ଦାଣ୍ଡରୁ ଯାଇଛନ୍ତି । ଫର୍ମାସି କରି ଯାଇଛନ୍ତି–''ବୋହୂ ! ଆଜି ସୋରିଷ ବଟା ଦେଇ କରିବୁ ।''

ବୀର- ମା' ଭାତ ବସେଇ ଦେଇ ବାଡ଼ିପଟ ଅଗଣାରେ ଖବର କାଗଜ ମେଲେଇ ତା' ଉପରେ ମାଛ ସବୁକୁ ଖେଳେଇ ଦେଲେ । ବୀର ଘର ଭିତରେ ବଲ୍ ଧରି ଏପଟ ସେପଟ ହେଉଥାଏ । ମଝିରେ ମଝିରେ ପଚାରୁଥାଏ–''ମା, ଜେଜେ କୁଆଡ଼େ ଗଲେ ? ମୋତେ ନେଲେନି ।''



ବୀର- ମା' ତ ମନେ ମନେ ଚିଡ଼ିକି ଥା'ନ୍ତି । କହିଲେ–''କୁଆଡ଼େ ଆଉ ଯିବେ, ଯାଇ ଯାଇ ସେଇ ମଦନା ଘରକୁ ଯାଇଥିବେ ।''

''କୋଉ ମଦନା ? ମୋ' ସାଙ୍ଗ ।''

''ହୁଁ''

''ସେ ବି କ'ଣ ଢେଢେଙ୍କ ସାଙ୍ଗ ।''

''ଆରେ ବୋକା ସେ ତ ତୋରି ଭଳି ଟିକିଟେ ସେ କେମିତି ତୋ' ଢେଢେଙ୍କ ସାଙ୍ଗ ହେବ । ମଦନାର ଢେଢେ ତାଙ୍କ ସାଙ୍ଗ ।''

ବୀର ହସି ପକେଇଲା । କହିଲା—''ମଦନାର ଢେଢେଙ୍କୁ କିଛି ଆସେନି । କ୍ରିକେଟ୍ ଖେଳରେ କାହାକୁ ରନ୍ କହନ୍ତି, କ'ଣ ହେଲେ ଏଲ୍‌ବିଡବ୍ଲ୍ୟୁ ହୁଏ ସେ ଜାଣନ୍ତି ନାହିଁ ।''

ବୀର - ମା' କହିଲେ—''ତାଙ୍କ ପିଲାଦିନେ କ୍ରିକେଟ୍ ନ ଥିଲା ।''

ବୀର କହିଲା— ''ଓହୋ । ଜାଣିଚୁ, ମୁଁ ସବୁଦିନେ ମଦନାକୁ ଆଉଟ୍ କରି ଦେଉଛି ।''

ବୀର- ମା'ଙ୍କର ମନେ ପଡ଼ିଲା ଯେ ଭାତ ବସିଚି । ଗବ୍ ଗବ୍ ହୋଇ ଫୁଟିବଣି । ବେଶୀ ଡେରି କଲେ ଭାତ ଜାଉଭଳି ହେଇଯିବ । କ'ଣ କରିବେ ? ଏପଟରେ ଖୋଲା ଅଗଣାଟାରେ ମାଛ ଖେଳାମେଳା ଅବସ୍ଥାରେ ଅଛି । ଛାଡ଼ିକି ଯିବା ଅସମ୍ଭବ ।

ସେ ବାଧ୍ୟହେଲେ ବୀରକୁ କାମରେ ଲଗେଇବାକୁ । କହିଲେ—''ମୋ' ସୁନାଟା ଏଇଠି ମାଛ ପାଖରେ ଥା' । ଭାତ ହେଇଯିବଣି । ମୁଁ ଗାଳି ଦେଇ ଆସେ । ଚାହିଁଥିବୁ- କୁଆ କି ବିଲେଇ ଯେମିତି ନ ଆସନ୍ତି ।''

ବୀର କହିଲା- ''ଯିଏ ଏଠିକି ଆସିବ ମୁଁ ତାକୁ ବଲ୍ ମାରି ଆଉଟ୍ କରିଦେବି ।'' ତଥାପି ମା' ତା' ହାତରେ ଛୋଟ ଡାଙ୍ଗ ଖଣ୍ଡେ ଧରେଇ ଦେଲେ । ତା' ପରେ ଆଇଁଷ ହାତ ଧୋଇ ହାଣ୍ଡିଶାଳକୁ ଗଲେ ।

ବୀର- ମା' ଭିତରକୁ ଯିବା ମାତ୍ରେ କେଉଁଠି ଥିଲା କେଜାଣି ବାହାରି ଆସିଲା ବିଲେଇଟେ ଓ ବୀରକୁ ଦେଖି ଗେହ୍ଲେଇ ହେଲାଭଳି କହିଲା—''ମିଆଁଉ ।''

ବୀର ତା' ଆଡ଼କୁ ଡାଙ୍ଗ ଉଞ୍ଚେଇ କହିଲା—''ଚୋପ୍, ଯଦି ବଦ୍‌ମାସି କରୁ ଆଜି ତୋତେ ଆଦୌ ମାଛ ଦିଆଯିବନି, ଜାଣିଥା ।''

ବିଲେଇ ଚୁପ୍‌ଚାପ୍ ଟିକିଏ ଦୂରରେ ଆଖି ବୁଜି ବସି ରହିଲା । ଠିକ ସେତିକିବେଳେ ବାଡ଼ି ସଜନା ଗଛ ଡାଳରେ ଆସି ବସିପଡ଼ିଲା କୁଆଟେ । ସେ ମାଛଗୁଡ଼ାକୁ ଚାହିଁ କହିଲା—କା' କା' ।

ବୀର କହିଲା—''ଆରେ କୁଆ, ସେଇଠି ବସିଥା, ତଳକୁ ଓହ୍ଲେଇଲେ ତୋତେ ବଲ୍ ମାରି ଆଉଟ୍ କରିଦେବି ।''

କୁଆ ଚୁପ୍ ହୋଇଗଲା ।

ବୀର ଆରମ୍ଭ କରିଦେଲା ତା' ନିଜ ବଲ୍ ଖେଳ । ବୀରର ବୋଲିଂ ବିଶେଷ ଖରାପ ନଥିଲା । ବିଲେଇଟା ଡରିମରି ଦି - ପାଦ ପଛକୁ ଘୁଞ୍ଚିଗଲା । ବୀର ଭାବିଲା - ବିଲେଇ ତାକୁ ଡରୁଛି । ତେଣୁ ସେ ଖୁସିହୋଇଗଲା । ଖେଳୁ ଖେଳୁ ବଲ୍‌ଟା ଟିକିଏ ଦୂରକୁ ଗଡ଼ିଗଲା । ବୀର ଗଲା ଆଣିବାକୁ ।

ସେଇ ସୁଯୋଗରେ ବିଲେଇ କୁଦିପଡ଼ିଲା ମାଛ ଉପରେ । ବଲ୍ ଗୋଟେଇ ସାରି ବୀର ଦେଖିଲା - ବିଲେଇ ପାଟିରେ ପାଟିଏ ମାଛ ଧରି ସାରିଲାଣି । ବୀରର ରାଗ ହେଲା । ସେ ଡାଙ୍ଗ ଧରି ତାକୁ ପିଟିବାକୁ ଦୌଡ଼ିଲା ।

କିନ୍ତୁ ବିଲେଇ କ'ଣ ଆଉ ସେଠି ରହେ ।

ପାଟିରେ ମାଛ ଧରି ଦେ - ଦଉଡ଼ ।

ବୀର ମଧ୍ୟ ଛାଡ଼ିବା ପିଲା ନୁହେଁ,

ସେ ବିଲେଇ ପଛରେ ଦୌଡ଼ିଲା ।

ଘରୁ ବାହାରି ରାସ୍ତାକୁ ଡେଇଁପଡ଼ିଲା ବିଲେଇ,

ବୀର ମଧ ସେଇଆ କଲା ।

ବିଲେଇ ଦୌଡ଼ିଲା ଯେ ଦୌଡ଼ିଲା,

ପଛେ ପଛେ ବୀର ମଧ୍ୟ ଦୌଡ଼ିଲା ।

ବିଲେଇ ସାଇ ବସ୍ତି ପାର୍ ହେଇ ପ୍ରଧାନ ରାସ୍ତାରେ ପହଞ୍ଚିଗଲା । ବୀର ମଧ୍ୟ ତା' ପଛେ ପଛେ ପ୍ରଧାନ ରାସ୍ତାରେ ପହଞ୍ଚିଗଲା ।

ରାସ୍ତାରେ ମାଳ ମାଳ ସାଇକେଲ୍, ରିକ୍ସା, ଅଟୋ, କାର୍, ମୋଟର ସାଇକେଲ୍, ଟ୍ରକ୍, ଜିପ୍ ଚାଲିଥାଏ । କିନ୍ତୁ ବିଲେଇଟାଏ ଦୌଡ଼ିବା ଦେଖି ସବୁ

ଗାଡ଼ି ବ୍ରେକ୍ ଦେଇ ଠିଆହେଲେ । ରାସ୍ତା ଜାମ୍ ହୋଇଗଲା । ଗାଡ଼ି - ମଟରର ଭିଡ଼ ଭିତରେ ପଶି ବିଲେଇଟା ପଳେଇଗଲା ହେଲେ ବୀର ଯାଇପାରିଲାନି । କାହୁଣୁ ମାହୁଣୁ ହୋଇ ଘରକୁ ଫେରି ଆସିଲା ।

ଘରେ ପହଞ୍ଚି ଦେଖେ ତ ମନ ଖୁସିରେ କୁଆ ଥଣ୍ଟ ଥଣ୍ଟ କରି ମାଛ ଗିଳିବାରେ ଲାଗିଛି । ସେ ରାଗରେ ତା' ଉପରକୁ ବଲ୍ ପକେଇଲା, କୁଆଟା ମଧ୍ୟ ତତ୍‌କ୍ଷଣାତ୍ ଆଉଟ୍ ହୋଇ ଗଛ ଡାଳକୁ ପଳେଇଲା । କିନ୍ତୁ ଅଧାରୁ ଅଧିକ ମାଛ ନଥିଲା ।

ବୀରକୁ କାନ୍ଦ ମାଡ଼ିଲା ।

ଯେହେତୁ ମା' ଦେଇଥିବା କାମଟା ସେ ଠିକ୍‌ଭାବେ ତୁଲେଇ ପାରିଲାନି ସେଥିପାଇଁ ତାକୁ ଦୁଃଖ ଲାଗିଲା ।

ମା' ରୋଷେଇ ଘରୁ ବାହାରି ମାଛ ପରିମାଣ ଦେଖି ପଚାରିଲେ—''କିରେ ବୀର, ମାଛ ଛାଡ଼ି ତୁ କୁଆଡ଼େ ପଳେଇଥିଲୁ ନା କ'ଣ ?''

ବୀର କହିଲା— ବଲ୍ ଦେଲି ଗଡ଼େଇ
ମାଛ ନେଇଗଲା ବିଲେଇ ।
ବିଲେଇ ପଛରେ ଧାଉଁ ଧାଉଁ
ମାଛ ଖାଇଦେଲା ବୁଢ଼ା କାଉ ।

ମା' ମନଦୁଃଖ କଲେ । କିନ୍ତୁ ଘରକୁ ଫେରି ଯେତେବେଳେ ଜେଜେ ଏକଥା ଶୁଣିଲେ, ସାବାସି ଦେଇ କହିଲେ—''ତୁ ସତକୁ ସତ ବୀରଟେ ହେବୁ ।'' ■

କ୍ୱାଟର ନଂ - ୪, ସେକ୍ଟର - ୭, ବିଡ଼ାନାସୀ, କଟକ - ୧୪

# ଯେମିତି ସଙ୍ଗ, ସେମିତି ଢଙ୍ଗ

● ସ୍ନେହଲତା ମହାନ୍ତି

କୁନୁ ଆଉ ତା'ର ମାଆ ମାମୁଁ ଘରକୁ ଯାଇଛନ୍ତି । ଘରେ ସୁରେଶ ବାବୁ ଏକୁଟିଆ । ରୋଷେଇବାସ ହେଉନାହିଁ । ସେଥିପାଇଁ ସେ 'କଳିଙ୍ଗ' ମେସ୍‌ରେ ଭାତ ଖାଆନ୍ତି । ଦୀନୁ ସାହୁ ଦୋକାନରେ ଅଫିସ୍ ଫେରନ୍ତା ଜଳଖିଆ ଖାଆନ୍ତି ।

ସେଦିନ ଅଫିସ୍‌ରୁ ଫେରି ସାହୁ ଦୋକାନରେ ଜଳଖିଆ ଖାଉଚନ୍ତି, ଦେଖିଲେ ସ୍କୁଲ ଫେରନ୍ତା ପିଲାଟିଏ ଆସିଲା । କାନ୍ଧରୁ ବ୍ୟାଗ୍‌ଟି କାଢ଼ି ରଖିଦେଲା । ଗଦା ହୋଇଥିବା କପ୍, ପ୍ଲେଟ୍, ବାସନଗୁଡ଼ିକ ମାଜିବାରେ ଲାଗିଲା । ମୁହଁଟି ତା'ର ଶୁଖି ଯାଇଥାଏ । ସ୍କୁଲରୁ ଯେତେବେଳେ ଫେରିଚି ନିଶ୍ଚୟ ଭୋକ ହେଉଥିବ । ସୁରେଶବାବୁ ଏଇ କଥା ଭାବୁଥିଲେ ।

ବାସନ ମଜା, ଧୁଆ ସରିଗଲା । ତା'ପରେ ସେଗୁଡ଼ିକ ଥାକଥାକ କରି ସଜାଡ଼ି ରଖିବାରେ ଲାଗିଗଲା ପିଲାଟି । ଏଥର ସାହୁ ତାକୁ କିଛି ବରା ପକୁଡ଼ିର ପୁଡ଼ିଆଟିଏ ବଢ଼ାଇ ଦେଲା । ସେ ସେଥିରୁ କିଛି ଖାଇଲା, ଆଉ କିଛି ଧରି ବ୍ୟାଗ୍‌ନେଇ ବାହାରିଲା ।



ସୁରେଶବାବୁ ପଚାରିଲେ ''ଆରେ ବାବୁ ! କେଉଁ ଶ୍ରେଣୀରେ ତୁମେ ପଢୁଛ ?'' ତୁମ ନାଆଁ କ'ଣ ? ପିଲାଟି ଉତ୍ତର ଦେଲା, ''ଆଜ୍ଞା, ମୋ ନାଆଁ ବିଶୁ । ମୁଁ ଷଷ୍ଠ ଶ୍ରେଣୀରେ ପଢୁଛି ।''

"ଆଉ ଏଠି ବାସନ ମାଜୁଛୁ ଯେ ?"

"ହଁ ଆଜ୍ଞା ବାସନ ମାଜିଦେଲେ ସାହୁବାବୁଙ୍କ ଠାରୁ କିଛି ଜଳଖିଆ ମିଳେ ।"

ଏତିକି କହି ବିଶୁ ଚୁପ୍ ରହିଲା । ସତେ ଯେମିତି ପ୍ରଶ୍ନର ଉତ୍ତର ଛଡ଼ା ଅଧିକ କିଛି ନ କହିବା ପାଇଁ ସେ ଅଭ୍ୟାସ କରିଛି ! ଜଣାପଡୁଚି ଭାରି ଧୀରସ୍ଥିର ପିଲାଟିଏ ।

ସୁରେଶବାବୁ ପୁଣି ପଚାରିଲେ, "ଏଠି ଏମିତି କାମକରି କାହିଁକି ଜଳଖିଆ ଖାଉ? ଘରେ କ'ଣ ତୋର କେହି ନାହାଁନ୍ତି ?"

—"ବାବୁ ! ମୋର ମାଆ ଅଛନ୍ତି । ହେଲେ ସେ ଅନ୍ୟ ଘରେ କାମ ପାଇଟି କରି ଯାହା ପାଆନ୍ତି ସେଥିରେ ଆମକୁ ଦୁଇଓଳି ପେଟପୂରା ଖାଇବା ପାଇଁ ନିଅଣ୍ଟ ହୁଏ ।"

—"ତୁ ପୁଣି ବହି, ଖାତା କିଣି ପଢୁଚୁ କେମିତି ? ନିଶ୍ଚୟ ତ ପଇସା ଦରକାର ହେଉଥିବ ।"

—"ସାହୁବାବୁ ମୋତେ କିଛି ପଇସା ଦିଅନ୍ତି । ତା' ସହିତ ଜଳଖିଆ ବି ଦିଅନ୍ତି । ସେଇ ପଇସାରେ ମୁଁ ଅଧାଦାମ୍‌ରେ ବହି କେତେଖଣ୍ଡ କିଣେ । ମୋ ପଢ଼ାଖର୍ଚ୍ଚ ଚଳାଏ । ତାଙ୍କ ପାଖରେ କାମ ନକଲେ, ପଇସା ପାଇବି କେମିତି? କହୁ କହୁ ତା' ଆଖି ଛଳଛଳ ହୋଇ ଆସିଲା । ସୁରେଶବାବୁ ପିଲାଟିର ମନକଥା ବୁଝିପାରିଲେ । କହିଲେ, "ଚାଲ୍, ମୁଁ ତୁମ ଘରକୁ ଯିବି ।"

ବିଶୁ ଆଶ୍ଚର୍ଯ୍ୟ ହୋଇଗଲା । ସୁରେଶବାବୁଙ୍କ କଥାକୁ ସେ ବିଶ୍ୱାସ କରିପାରୁ ନଥିଲା । ତଥାପି ସେ ଆଗେ ଆଗେ, ସୁରେଶବାବୁ ତା' ପଛେ ପଛେ ଚାଲିଲେ ।

ଦୁହେଁ ତା' ଘରେ ପହଞ୍ଚିଲେ । ବିଶୁ ପିଣ୍ଡା ଉପରେ ସପ ଖଣ୍ଡିଏ ପକେଇ ଦେଇ କହିଲା, "ଆଜ୍ଞା, ବସନ୍ତୁ । ମାଆ ତ କାମରୁ ଫେରୁଫେରୁ ସଞ୍ଜ ହୋଇଯିବ ।" ଏତିକିବେଳେ ଭଉଣୀଟି ବିଶୁକୁ ଦେଖି ଧାଇଁ ଆସିଲା । ବିଶୁ କହିଲା, "ରୀତା, ବାବୁଙ୍କୁ ପ୍ରଣାମ କର ।" ସାଙ୍ଗେ ସାଙ୍ଗେ ରୀତା ଭୂଇଁରେ



ମୁଣ୍ଡ ଲଗାଇ ପ୍ରଣାମ କଲା । ତା'ପରେ ହାତ ଧୋଇ ଭାଇ ହାତରୁ ଜଳଖିଆ ପୁଡ଼ିଆଟି ନେଲା । "ବାବୁ ! ଏଇଠୁ ଟିକିଏ ଆସୁଚି" କହି ବିଶୁ ବାହାରିଗଲା ବାହାରକୁ ।

ସୁରେଶବାବୁ ଭାବିଲେ, ସେ ବୋଧହୁଏ ତା'ର ମାଆକୁ ଡାକିବା ପାଇଁ ଗଲା । କିନ୍ତୁ ଦେଖିଲେ ହାତରେ ଚା' ଗ୍ଲାସ୍ ନେଇ ସେ ଫେରିଚି । ନିଶ୍ଚୟ ଦୋକାନକୁ ଯାଇଥିଲା । ପାଖରେ ପାଣି ଗ୍ଲାସ୍‌ଟିଏ ରଖି ବାବୁଙ୍କ ହାତକୁ ଚା' ବଢ଼ାଇଦେଲା । ଇଚ୍ଛା ନଥିଲେ ବି ପିଲାଟିର ଆତ୍ମୀୟତାପୂର୍ଣ୍ଣ ଭଦ୍ର ବ୍ୟବହାର ଦେଖି ସୁରେଶବାବୁ ନା' କହିପାରିଲେ ନାହିଁ । ପିଉପିଉ ସେ ଖାଲି ଭାବୁଥିଲେ ଗରୀବ ହେଲେ ମଧ ପିଲାଟି କେତେ ସଂଯତ, କେତେ ଶୃଙ୍ଖଳିତ ଏବଂ କେତେ ସ୍ନେହୀ ! କଷ୍ଟ ସହିଷ୍ଣୁ ମଧ । ଭଗବାନ୍ ଏହାକୁ ଧନର ବଳ ଦେଇ ନାହାନ୍ତି, କିନ୍ତୁ ମନର ବଳ ଦେଇଛନ୍ତି– ଯାହା ଫଳରେ ସେ ଦିନେ ଭଲ ମଣିଷଟିଏ ହୋଇ ନିଶ୍ଚୟ ଭଲ କାମ କରିବ, ଭଲ ବାଟରେ ଯିବ । ଆମ କୁନୁ ତ ଏହାରି ବୟସର ପିଲା । ହେଲେ ଘରର କୌଣସି କାମ କରିବା ତ ଦୂରର କଥା, ପାଣି ଟୋପେ ବି ଗଡ଼େଇ ପିଇବ ନାହିଁ, ଅନ୍ୟକୁ ମାଗିବ । ଟିଉସନ୍ ସାର୍‌ଙ୍କ ପାଖରେ ଢୁଳେଇବ । ଭାତରେ ମାଛି ବସିଲେ ବି ହାତ ହଲେଇ ହୁରୁଡେଇବ ନାହିଁ । ଯେତେ ଡାକିଲେ ବି ଦିନ ଆଠଟାରେ ବିଛଣାରୁ ଉଠିବ । ବିଶୁଭଳି ପିଲା ପାଖରେ ସେ ଯଦି ରହନ୍ତା, ତା'ହେଲେ ନିଶ୍ଚୟ ବଦଳି ଯାଆନ୍ତା । କଥାରେ କହନ୍ତି ପରା

"ଯେମିତି ସଙ୍ଗ- ସେମିତି ଢଙ୍ଗ
ଭଲ ସାଙ୍ଗ ଯାହାର- ଭଲ ବୁଦ୍ଧି ତାହାର ।"

କିଛି ସମୟ ପରେ ବିଶୁର ମାଆ ଆସି ପହଞ୍ଚିଲେ । ସୁରେଶବାବୁ କିଛି ସମୟ ତାଙ୍କ ସହିତ କଥାବାର୍ତ୍ତା ହେବା ପରେ କହିଲେ "ଭଉଣୀ ବିଶୁଭଳି

ପୁଅଟିଏ ତୁମେ ପାଇଛ, ତୁମର ଭାଗ୍ୟ ଭଲ । ହେଲେ ତାକୁ ପଢ଼େଇ ଶୁଣେଇ ମଣିଷ କରିବା ହେଉଛି ବଡ଼ କଥା ।''

ବିଶୁର ମା' ଝରଝର କରି ଲୁହ ଝରେଇ ପକେଇଲେ । କହିଲେ, ''ବାବୁ, ମୁଁ ଦେଖୁଛି ମୋର ମାଲିକମାଲିକାଣୀମାନେ ସେମାନଙ୍କ ପିଲାଙ୍କୁ ହଜାର ହଜାର ଟଙ୍କା ଖର୍ଚ୍ଚକରି ଲେଖାପଢ଼ା, ଗୀତ, ନାଚ, ଖେଳ, କସରତ ଶିଖାଉଛନ୍ତି । ବାହାରକୁ ପଢ଼ିବା ପାଇଁ ପଠାଉଛନ୍ତି । ମୁଁ ଗାଁ ଇସ୍କୁଲ୍‌ରେ ପଢ଼ାଇବା ପାଇଁ ବିଶୁକୁ ସାହାଯ୍ୟ କରିପାରୁ ନାହିଁ । ବେଶୀ ପାଠ ପଢ଼ାଇବା ପାଇଁ କିପରି ବା ସାହାଯ୍ୟ କରିବି । ଭଲକରି ତ ଗଣ୍ଡାଏ ଖାଇବାକୁ ଦେଇ ପାରୁନାହିଁ । କି ଦିନ, ରାତି ମୋର ସେଇ ଚିନ୍ତା । କିଏ ଏ ଯୁଗରେ ଏମିତି ଦୟାବନ୍ତ ଅଛନ୍ତି ଯେ, ତା' ଦୁଃଖ ବୁଝିବ ?''

—''ତା'ହେଲେ ତା'ର ଦାୟିତ୍ୱ ମତେ ଦେଇଦିଅ । ମୋ ପୁଅ ସହିତ ମୁଁ ତା'ର ବି ଯତ୍ନ ନେବି । ପାଠ ପଢ଼େଇ ଭଲ ମଣିଷଟିଏ କରି ଗଢ଼ିବି । ତୁମର ଦୁଃଖ ଯିବ । ମୁଁ କଥା ଦେଉଚି, ପ୍ରତି ପନ୍ଦର ଦିନରେ ତାକୁ ଆଣି ତୁମ ସହିତ ଦେଖା କରାଇବି । ତୁମେ ମଧ କେତେବେଳେ କେମିତି ଯାଇ ତାକୁ ଦେଖି୍ ଆସିବ । ତା'ର ଦେହ ପା ଖବର ବୁଝି ଆସିବ ।''

''ହଉ ବାବୁ- ଆପଣଙ୍କର ଦୟା'' କହି ତା'ର ମା ସୁରେଶ ବାବୁଙ୍କୁ ଜୁହାର ଜଣେଇଲା । ସୁରେଶବାବୁ ମା', ପୁଅ, ଝିଅ ସମସ୍ତଙ୍କୁ ରିକ୍ସାରେ ତାଙ୍କ ଘରକୁ ନେଇଗଲେ । ସୁରେଶବାବୁଙ୍କ ସ୍ତ୍ରୀ, ପୁଅ ଆସିଯାଇଥିଲେ । ସମସ୍ତଙ୍କ ଭିତରେ ହସଖୁସିର କଥାବାର୍ତ୍ତା ହେଲା । ବିଶୁ ସେଠାରେ ରହିଲା । ଚଗଲା କୁନୁ ବିଶୁ ଭଳି ସାଙ୍ଗଟିଏ ପାଇ ତା'ର ଖରାପ୍ ପ୍ରକୃତିକୁ ଆସ୍ତେ ଆସ୍ତେ ଛାଡ଼ିଦେଲା । ଦୁହେଁ ଭାଇପରି ଚଳିଲେ । ଭଲ ପଢ଼ିଲେ । ସୁରେଶବାବୁ ଶାନ୍ତିରେ ନିଶ୍ୱାସ ମାରିଲେ । କୁନୁର ମା' କହିଲେ ଦୁହେଁଯାକ ମୋର ପୁଅ । ■

ବାର୍ମିସାହି, କଟକ-୯

# ରାଜାପୁଅ ଓ ଭାଲୁ ଭାଇ

● ଡକ୍ଟର ଜଗନ୍ନାଥ ମହାନ୍ତି

**ବହୁ**ଦିନ ତଳର କଥା । ଜଣେ ଥିଲେ ରାଜା । ତାଙ୍କର ଥିଲେ ଜଣେ ରାଣୀ । ଗୋଟିଏ ବୋଲି ପୁଅ । ରାଜପୁତ୍ର । ସେତେବେଳେ ଶିକାର କରିବା ମନା ନଥିଲା । ବଣଜଙ୍ଗଲ ବହୁତ ଥିଲା । ସେଥିରେ ବି ଜୀବଜନ୍ତୁ ଭର୍ତ୍ତି ହୋଇଥିଲେ । ମଣିଷ ମନ ଇଚ୍ଛା ଶିକାର କରି ସେମାନଙ୍କ ମାଂସ ଖାଉଥିଲେ ।

ଦିନକର କଥା । ରାଜପୁଅ ଶିକାର କରିବାକୁ ଜଙ୍ଗଲକୁ ଗଲେ । ସେ ଗୋଟିଏ ମିରିଗ ପିଛା ଧାଇଁଲେ । ଗହନ ବଣ ଭିତରେ ଫେରିବାକୁ ବାଟ ପାଇଲେ ନାହିଁ । ରାଜାପୁଅ ବୁଲି ବୁଲି ଭାରି ହାଲିଆ ହୋଇ ପଡ଼ିଲେ । ଖରାବେଳ । ସେ ଗୋଟିଏ ଗଛକୁ ଆଉଜି, ଛାଇରେ ବସି ପଡ଼ିଲେ । ନିଦ



ଲାଗିଗଲା । କିଛି ସମୟ ପରେ ଗୋଟିଏ ବାଘ ଗର୍ଜନ କଲା । ତାଙ୍କ ନିଦ ଚାଇଁକିନା ଭାଙ୍ଗିଗଲା । ରାଜାପୁଅ ଡରିଗଲେ ।

ତା'ପରେ ସେ ଦେଖିଲେ, ତାଙ୍କ ଆଗରେ ବାଘ ଠିଆ ହୋଇଛି । ଏତେ ବଡ଼, ବାଘ । ଏତେ ପାଖରେ ଯେ ବନ୍ଧୁକ ଉଠାଇ ଗୁଳି ମାରିବାକୁ ବେଳ ନଥିଲା । ତେଣୁ ସେ ବନ୍ଧୁକକୁ ଛାଡ଼ି ଗଛ ଉପରେ ଚଢ଼ିଗଲେ । ଗଛ ଉପରେ ଦେଖିଲେ, ଗୋଟିଏ ଡାଳରେ ଭାଲୁଟିଏ ବସିଛି । ତା' ଆଗରେ ଝୁଲୁଛି ଏକ ମସ୍ତବଡ଼ ମହୁଫେଣା । ମହୁ ଖାଇବା ପାଇଁ ଭାଲୁ ଗଛ ଉପରେ ଚଢ଼ିଛି । ସେ କଥା ରାଜାପୁଅକୁ ଜଣା !

ରାଜାପୁଅ ଏବେ ବଡ଼ ପ୍ରମାଦ ଗଣିଲା । ମହରଗରୁ ଯାଇ ଏବେ କାନ୍ତାରରେ ପଡ଼ିଲା । ଏଣେ ବାଘ ତ, ତେଣେ ଭାଲୁ । ପୁଣି ଭାଲୁ ଯେତେବେଳେ ଚାହିଁବ ମହୁଫେଣା ଭାଙ୍ଗି ମହୁ ଖାଇବ । ମହୁତକ ଉଡ଼ି ତାକୁ ମାରିବେ । ମହୁଫେଣାକୁ ନ ଭାଙ୍ଗି ହୁଏତ ତାଙ୍କୁ ସେ ଚଢ଼ୋଉ କରିବ ।

ତଳେ ଥାଇ ବାଘ କହିଲା– ହେ ଭାଲୁ ଭାଇ, ମୁଁ ଭାରି ଭୋକିଲା । ସେ ମଣିଷଟାକୁ ତଳକୁ ଠେଲି ଦେ । ମୁଁ ତାକୁ ଖାଇ ଭୋକ ମାରିବି ।

ଭାଲୁ କହିଲା– ନାଁ, ତା' ହେବ ନାହିଁ । ଲୋକଟି ବିଚରା ଜୀବନ ବିକଳରେ ଗଛ ଉପରେ ଚଢ଼ିଛି । ପୁଣି ମୋର ଆଶ୍ରାରେ ସେ ଅଛି । ମୋର ଧର୍ମ ତାକୁ ରକ୍ଷା କରିବା ।

ରାଜାପୁଅ ଭାଲୁ କଥା ଶୁଣି ଭାରି ଖୁସି ହୋଇଗଲା । ସେ ବନ୍ଧୁ ଭଳି ତାଙ୍କୁ ଏତେ ବିପଦରେ ସାହା ହୋଇଛି ! ଭାଲୁ ପ୍ରତି ତା'ର ସରାଗ ଦେଖାଇ ରାଜାପୁଅ କହିଲା– ଭାଇ ତୁମେ କେତେ ଭଲ ! ତୁମେ ଦୟାକଲ । ମୋତେ ଆଶ୍ରା ଦେଇ ବାଘ ପାଟିରୁ ରକ୍ଷା କଲ ।

ବାଘ କି ସହଜେ ଛାଡୁଛି । ମିଳୁଥିବା ଶିକାରଟା ହାତଛଡ଼ା ହୋଇଛି । ସେ ଭାଲୁକୁ ବୁଝାଇବାରେ ଲାଗିଲା, ହେ ଭାଲୁ ଭାଇ, ମଣିଷ ଜାତିକୁ ବିଶ୍ୱାସ ନାହିଁ । ସେମାନେ ଯାହାଠାରୁ ଉପକାର ପା'ନ୍ତି, ତା'ର ଅପକାର କରନ୍ତି । ସେ ହୁଏତ ଗୁଳି ମାରି ତୋତେ ମାରିଦେବ ।

ଭାଲୁ କ'ଣ କରିବ ! ଭାବି ପାରିଲା ନାହିଁ । ସତେ ମଣିଷ ତ ଢ଼ୋ ଢ଼ୋ କରି ଆମ ଜାତିଭାଇଙ୍କ ଭିତରୁ କେତେ ମାରିଛନ୍ତି । ସେ ଦେଖିଛି । ତେବେ ସେ ତା' କଥାରେ ଅଟଳ ରହି କହିଲା ନାହିଁ ଭାଇ, ତୁମେ ଯାଅ ।

ବାଘ ରାଗରେ ଗର ଗର ହୋଇ ପଳାଇଲା । ଭାଲୁ ଗଛରେ ମହୁ ଖାଇବାକୁ ବସିଲା । ରାଜାପୁଅ ଗଛରୁ ଓହ୍ଲାଇଲା । ଭାଲୁର କି ଉପକାର କରିବ ଚିନ୍ତା କଲା । ସେ ଯେତେ ଶୁଖିଲା କାଠ ପତ୍ର ସବୁ ଆଣି ସେଇ ଗଛ ତଳେ ଜମା କଲା । ଲୋକଟି ଏମିତି କ'ଣ କରୁଛି ଭାଲୁ ଗଛ ଉପରୁ ଦେଖୁଥାଏ, ମାତ୍ର କିଛି ବୁଝିପାରୁ ନଥାଏ ।

ରାଜାପୁଅ ସେଇ କାଠପତ୍ର ଗଦାରେ ନିଆଁ ଲଗାଇ ଦେଲା । ନିଆଁ ଧୂଆଁ ଉପରକୁ ଉଠିଲା । ଭାଲୁ ତାତି ଆଉ ଧୂଆଁରେ ଗଛ ଉପରେ ରହି ନପାରି ତଳକୁ ଓହ୍ଲାଇଲା । ଭାଲୁର ପୁଣି ନିଆଁକୁ ଭାରି ଡର !

ସେହି ମହୁଫେଣାରୁ ମାଛିମାନେ ପ୍ରାଣ ବିକଳରେ ଉଡ଼ି ପଳାଇଲେ । ରାଜାପୁଅ ଭାଲୁକୁ କହିଲା– ଭାଇ, ନିଆଁ ଲିଭିଗଲାଣି । ଧୂଆଁ ବି କମିଗଲାଣି । ଏବେ ତୁମେ ଗଛ ଉପରକୁ ଯାଇପାର । ମହୁ ମାଛିମାନେ ଫେଣାରୁ ଚାଲିଗଲେଣି । ଏବେ ତୁମେ ମନବୋଧ କରି ମହୁତକ ପିଅ ।

ଭାଲୁ ତ ଭୋକିଲା ହୋଇଥିଲା । ସେ ଉପରକୁ ଖପ୍ ଖପ୍ ଚଢ଼ିଯାଇ ଦେଖିଲା, ସତେ ଫେଣାରେ ଗୋଟିଏ ହେଲେ ମାଛି ନାହିଁ । ମହୁଧାର ଛୁଟିଛି । ସେ ଆରାମରେ ଖାଇବାରେ ଲାଗିଲା । ଖଣ୍ଡେ ଖଣ୍ଡେ ଫେଣାରୁ ଭାଙ୍ଗି ତଳ ପତ୍ର ଉପରକୁ ପକାଇ ଦେଇ ଭାଲୁ କହିଲା– ଭାଇ, ତୁମକୁ ବି ଭାରି ଭୋକ ଲାଗିବଣି । ତୁମେ ବି ମହୁ ଖାଅ ।

ସାଥି ହୋଇ ସେମାନେ ମହୁ ଖାଇଲେ । ଭାଲୁ ସତେ ଏତେ ମଜାରେ କେବେ ଏତେ ମହୁ ଖାଇ ନଥିଲା । ରାଜାପୁଅ ଭାଲୁକୁ ଧନ୍ୟବାଦ ଜଣାଇ ବନ୍ଧୁକଟି ଧରି ବିଦାୟ ନେଲା । ■

୨୯୩୫, ଗୌରୀନଗର, ଭୁବନେଶ୍ୱର- ୭୫୧୦୦୨

# କଣ୍ଢେଇ ଯାତ୍ରା

● ପ୍ରଫେସର ଡକ୍ଟର କୁଳମଣି ସାମଲ



ମିକି ବାପା ମା'ଙ୍କର ଗୋଟିଏ ଝିଅ । ଭାରି ସେ ଗେହ୍ଲାରେ ଥାଏ । ତା'ଜନ୍ମଦିନ ହେଲେ ତା'ସାଆନ୍ତ ମା' ଘରେ ଚକୁଳି ପିଠା କରେ । ମିକି ରାଗିଯାଇ କୁହେ, ''ସାଆନ୍ତ ମା, ମୋ ସାଙ୍ଗ ଟିକି ତା'ଜନ୍ମ ଦିନେ କେକ୍ ଖାଉଛି, ତୁ ଗାଁ ଲୋକଙ୍କ ପରି ଖାଲି ଚକୁଳି ପିଠା କରୁଛୁ ।'' ସାଆନ୍ତ ମା' କହେ, ''ଆଲୋହୁଣ୍ଡୀ, ଚକୁଳି ପିଠା ଶୁଭ, ତା'ଦେଖିବାକୁ ଗୋଲ, ତା'ର ଶେଷ ନାହିଁ । ସେହିପରି ତୋ ଜନ୍ମଦିନ ଚକୁଳି ପିଠା ପରି ଘୂରି ଘୂରିକା ଥରକୁ ଥର ଆସିବ । ଶେଷ ହେବ ନାହିଁ ।'' କେଡ଼େ ମଜା କଥା କହୁଥିଲା ସାଆନ୍ତ ମା', କୁଆଡ଼େ ଗଲାଣି ।

ମିକି ପ୍ରତିବର୍ଷ ଜନ୍ମଦିନେ ସାଆନ୍ତ ମା'କୁ ମନେ ପକାଏ । ସେଦିନ ଚକୁଳି ଖାଇବାକୁ ମନକରେ । ଏବର୍ଷ ସେ ତା'ବୋଉକୁ କହିଲା, ''ବୋଉ, ଏ ବର୍ଷ

ଜନ୍ମଦିନେ ମୁଁ ଗୋଟିଏ କଣ୍ଢେଇ ଯାତ୍ରା କରିବି । ମୋ ସାଙ୍ଗମାନେ ତାଙ୍କ କଣ୍ଢେଇ ଆଣିବେ । ଆମ ଘରେ କଣ୍ଢେଇ ମେଲଣ ହେବ । ମୁଁ ସମସ୍ତଙ୍କୁ ନିମନ୍ତ୍ରଣ କରିଛି । ତାଙ୍କ ପାଇଁ ତୁ ପିଠା କରିବୁ ।''

ସତକୁ ସତ ମିକିର ଆଠ/ଦଶ ଜଣ ସାଙ୍ଗ ତାଙ୍କ କଣ୍ଢେଇ ଧରି ଆସଲେ । କେତେ ପ୍ରକାର କଣ୍ଢେଇ । ଜଣଙ୍କର କୁଁକୁଁ ହୋଇ କାନ୍ଦିଲା ବେଳକୁ ଆଉ ଜଣଙ୍କର କୁକୁର ଭୋ ଭୋ ହେଲା । ରମୁର ମାଙ୍କଡ଼ ହାତ ହଲେଇ ଦାନ୍ତ ଦେଖାଇଲା । ଶାନ୍ତିର ଛୋଟ ମଟର ଗାଡ଼ି ଆଲୁଅ ଜାଳି ଏଣେ ତେଣେ ଧାଁ ଦଉଡ଼ କରୁଥାଏ । ଭାରି ମଜା ହେଉଥାଏ ।



ସେତିକିବେଳେ ପହଞ୍ଚିଲା ରୀନା । ତା' ମାମୁଁ ଆମେରିକାରୁ ଗୋଟିଏ କଣ୍ଢେଇ ତା ପାଇଁ ଆଣିଥିଲେ । କଣ୍ଢେଇର ଚିଲା ଚିଲା ଆଖି, ଫୁରୁଫୁରୁ ବାଳ, ଫ୍ରକ୍ ପିନ୍ଧିଛି, ଓଠରେ ଲିପ୍‌ଷ୍ଟିକ୍, ଆଖି ଜୁଳୁଜୁଳୁ । ସତେ ଯେପରି ଆମେରିକାରୁ ଆସିଛି ସାହେବାଣୀ ଝିଅ ।

ଘରକୁ ଆସୁ ଆସୁ କହିଲା, ''ମୁଁ ଆସିଲି, ଜୁଲି, ଓଡ଼ିଆ ବୁଝୁନି, ମୋତେ ଇଂରାଜୀରେ ପଚାର ମୁଁ ସବୁ ଉତ୍ତର ଦେବି ।'' ଏତକ ସେ ଇଂରାଜୀରେ କହିଲା ।

ରୀନା ଗୋଟିଏ କାଗଜରେ ଲେଖିଲା ''ଡଗ୍ ଆଣ୍ଡ ଗଡ୍'' କହିଲା - ପଢ଼ିଲୁ ଜୁଲି । ଜୁଲି ପଢ଼ି ଦେଲା । ରୀନା ପଚାରିଲା ''ଜୁଲି, ତୋତେ ଏସବୁ କିଏ ପଢ଼େଇଲା ?'' ଜୁଲି କହିଲା, ''ମୋ ଟିଚର ରବର୍ଟ ସନ୍ । ସେ ଜଣେ ଭଲ ଟିଚର୍'' । ଏତିକିବେଳେ ମିକି ଖଣ୍ଡେ କାଗଜରେ ଗୋଟିଏ ସଂଖ୍ୟା ଇଂରାଜୀରେ ଲେଖି ଦେଖାଇଲା । ଜୁଲି ତାକୁ ବି ପଢ଼ି ଦେଲା । ସବୁପିଲା ଭାରି ଖୁସି

ହୋଇଗଲେ । କଣ୍ଢେଇଟାର କି ବୁଦ୍ଧି । ମଣିଷଙ୍କ ପରି କଥା କହୁଛି, ଲେଖା ପଢ଼ୁଛି, ପ୍ରଶ୍ନ ପଚାରିଲେ ଉତ୍ତର ଦେଉଛି ।

ରୀନା କହିଲା, ତା' ମାମୁଁ କହୁଥିଲେ, ''ଏ କଣ୍ଢେଇର ଦାମ ୯୯ଡଲାର, ଆମଟଙ୍କାରେ ପ୍ରାୟ ପାଞ୍ଚ ହଜାର ଟଙ୍କା'' । ସମସ୍ତେ ଏକାବେଳକେ କହି ପକାଇଲେ, ''ହଁ, ଏତେଟଙ୍କା, ପାଞ୍ଚହଜାର ! କହିଲୁ ରୀନା, ମାମୁଁ ଆଉ କ'ଣ କହୁଥିଲେ ?''

ମାମୁଁ କହୁଥିଲେ, ''ଏମିତିକା ଦଶ ହଜାର କଣ୍ଢେଇ ଏ ବର୍ଷ ତିଆରି ହେବ । ଏ କଣ୍ଢେଇ ଭିତରେ ଗୋଟିଏ ଛୋଟ କ୍ୟାମେରା ଅଛି, କଂପ୍ୟୁଟର ଯନ୍ତ୍ରର କୌଶଳରେ ଏ ତିଆରି ହୋଇଛି ପ୍ରାୟ ଏକ ହଜାର ଶବ୍ଦ ଏ ଶିଖିଛି । ଦେଖି ପାରିବ, ପଢ଼ି ପାରିବ, ଶୁଣିପାରିବ ଓ କଥା କହିବ । ତାକୁ ଏକ ବାକ୍ସ ଉପରେ ରଖାଯାଇଛି । ଏ ବାକ୍ସଟି ତା'ର ପ୍ରକୃତ ମୁଣ୍ଡ । ସେଠୁ ତାକୁ କାଢ଼ିନେଲେ ସେ ଆଉ କିଛି କରିପାରିବ ନାହିଁ ।''

ଏତିକି ବେଳେ ମିକି ବୋଉ ଭିତରୁ ଡାକ ଛାଡ଼ିଲେ, ''ପିଲାଏ, ଆସ, ଆସ, ପିଠା ବଢ଼ା ହେଲାଣି, ଖାଇବ ଆସ ।'' ଖାଇବାକୁ ଗଲାବେଳେ ପିଲାଏ ସେ ବିଜ୍ଞାନ କଣ୍ଢେଇ କଥା ଭାବୁଥାନ୍ତି । ହଠାତ୍ କଣ୍ଢେଇ କହିଲା, ''ବାଏ, ବାଏ ।'' ପିଲାଏ ହସି ଉଠିଲେ ।■

ସାମଲ ନିବାସ, ଯୋବ୍ରା, କଟକ-୩

# ସାଙ୍ଗ ନଥିଲେ କି ନାଚ ଖେଳ

● ଜହ୍ନୁରୀଭାଇ ରାମପ୍ରସାଦ ମହାନ୍ତି

ସୁନ୍ଦର ଚଢ଼େଇଟିଏ ଥିଲା । ପାରା ଥଣ୍ଟ ଠାରୁ ତା'ଥଣ୍ଟଟା ଆହୁରି ସୁନ୍ଦର । ଆଉ ତା'ର ଡ଼େଣା ? ମୟୁର ପୁଚ୍ଛ ଠାରୁ ତାହା ଆହୁରି ସୁନ୍ଦର । ସେ ଚଢ଼େଇର ଡେଣା କେମିତି ଶୁଣିବ ! ଇନ୍ଦ୍ରଧନୁର ସିନା ସାତରଙ୍ଗ ଆହୁରି ଅଧିକ ରଙ୍ଗ ତା'ଡ଼େଣାରେ ଲାଗିଥାଏ ।



କୋଇଲିର ସ୍ୱର ବଡ଼ ମଧୁର ବୋଲି କହନ୍ତି । କିନ୍ତୁ ମୁଁ ଯେଉଁ ଚଢ଼େଇ କଥା କହୁଛି, ତାର ସ୍ୱର ଆହୁରି ମିଠା । ଚଢ଼େଇଟାକୁ ଯିଏ ଦେଖେ, କହେ - ଏତେ ସୁନ୍ଦର ଚଢ଼େଇ ମୁଁ ତ କେବେ ଦେଖିନି, କେଉଁଠୁ ଆସିଲା ଏ ଚଢ଼େଇ । ଆମ ରାଇଜରେ ତ କେହି ଏପରି ଚଢ଼େଇ ଦେଖି ନାହାନ୍ତି । ପ୍ରକୃତରେ ଏପରି ଏକ ଚଢ଼େଇର ସ୍ୱର କେହି ଶୁଣି ନାହାନ୍ତି କି ତାକୁ କେହି ଦେଖି ନାହାନ୍ତି ।

ଏପରି ଏକ ଅପୂର୍ବ ଚଢ଼େଇ ଯିଏ ଦେଖିଲା, ସେ କାବା ହୋଇଗଲା । ଥରେ ଚଢ଼େଇଟି ପାଣି ପିଉଛି, ପାଣିରେ ନିଜର ଛାଇ ଦେଖିଲା । ଭାବିଲା - ମୁଁ ତ କେଡ଼େ ସୁନ୍ଦର ହୋଇଛି । ମୋ ଭଳି ସୁନ୍ଦର ଜଗତ ସାରା ଜଙ୍ଗଲରେ କେହି ନଥିବେ । ସେ ଉଡ଼ିଯାଇ ଗୋଟିଏ ଗଛ ଡାଳରେ ବସିଲା ।



ତଳେ ମୟୁର ଗୁଡ଼ିଏ ଥିଲେ । ସେମାନେ ତାକୁ ଡାକିଲେ ହେ ଆ'ନାଚିବା ।

ଚଢ଼େଇଟା ତାଙ୍କ କଥା ଶୁଣିଲା ନାହିଁ । ମୁଁ ତ ଏତେ ସୁନ୍ଦର । କାହିଁକି ଏ ଅସନା ଚଢ଼େଇ ଗୁଡ଼ିକ ସାଙ୍ଗରେ ନାଚିବାକୁ ଯିବି । ଏକୁଟିଆ ସେଇଠି ବସିଲା । ତଳେ ମୟୁରମାନେ ହସିଲେ, ଖେଳିଲେ, ନାଚିଲେ । ଏତିକି ବେଳେ ଦଳେ ଶୁଆ ଉଡ଼ି ଆସିଲେ । ଉଡ଼ି ଆସି ସେ ଗଛରେ ବସିଲେ । ତାକୁ କହିଲେ ହେ - ପିଜୁଳୀ ଖାଇବୁ ଆ ।

ସେ ଭାବିଲା, ମୁଁ ତ ସବୁଠୁ ସୁନ୍ଦର ଚଢ଼େଇ । ଏମାନଙ୍କ ପାଖକୁ ଯିବି କାହିଁକି ?

ଶୁଆମାନେ ମନଭରି ଆମ୍ବ ଖାଇଲେ । ବଢ଼ିଆ ବଢ଼ିଆ ସୁଆଦିଆ ଆଉ କଞ୍ଚା ସୁଆଦିଆ ଆମ୍ବ ଶୁଆମାନେ ଖାଇସାରି ଖୁସିରେ ଏଡାଳରୁ ସେଡାଳ ଉଡ଼ି

ବୁଲିଲେ । ସୁନ୍ଦର ଚଢ଼େଇଟି ଚୁପ୍‌ଚାପ୍ ବସିଥାଏ । ଆକାଶରେ ମେଘ ଘୋଟି ଥାଏ । ଥଣ୍ଡା ପବନ ବହିଲା । କୋଇଲି ଗୀତ ଗାଇଲା । ସେ ଡାକିଲା - ହେ ଆ' ମନମତାଣିଆ ଗୀତ ଗାଇବା ।

ସେଇ ସୁନ୍ଦର ଚଢ଼େଇଟା ମୁହଁ ବୁଲେଇ ଦେଲା । ସେ ଭାବିଲା - ମୋତେ କ'ଣ ମଧୁର ଗୀତ ଗାଇ ଆସେ ନାହିଁ । ମୁଁ କାହିଁକି ଏ ଅସନା ଚଢ଼େଇ ପାଖକୁ ଯିବି । ମୋର ତ ପୁଣି ମାନମହତ ଅଛି ।

କୋଇଲି ଯେଉଁ ଗୀତ ଗାଇଲା, କେତେ ସୁନ୍ଦର । ଶୁଆମାନେ ଯେଉଁ ଆମ୍ବ ଖାଇଲେ, କେତେ ମିଠା । ମୟୁର ନାଚ କେତେ ମନଲୋଭା । କିନ୍ତୁ ଏ ଚଢ଼େଇଟା ଏକୁଟିଆ ବାଆଁରା ହୋଇ ଗଛରେ ବସିଥାଏ ।

ନୂଆ ସକାଳଟିଏ ଆସିଲା । ଖରାବେଳ ଗଲା । ପୁଣି ସନ୍ଧ୍ୟା ହେଲା । ଚଢ଼େଇଟା ଗଛରେ ଯେମିତି ବସିଥିଲା ସେମିତି ବସିଛି । ତା'କୁ ଆଉ କେହି ଡାକିଲେ ନାହିଁ । ନାଚିବାକୁ, ଖେଳିବାକୁ କି ଖାଇବା ପାଇଁ । ଏବେ ସେ ବଳେବଳେ କେମିତି ଯିବ । ଯିଏ ଯେତେ ସୁନ୍ଦର ହୋଇଥାଉ, ଏକୁଟିଆ ସେ କ'ଣ ଖେଳି ପାରିବ । ସେଇ ସୁନ୍ଦର ଚଢ଼େଇଟା କେମିତି ଏକୁଟିଆ ସେ ଗଛରେ ବସିଲା, କେତେବେଳ ଯାଏ ବସିଲା, ସେ କଥା କେହି ଜାଣନ୍ତି ନାହିଁ । ପରେ ସେ ଯାଇ ମୟୁର ସାଙ୍ଗରେ ନାଚିଲା କି ? ଶୁଆ ପାଖକୁ ଯାଇ ପିଜୁଳୀ ଖାଇଲା କି ? କୋଇଲି ସାଥୀରେ ବସି ଗୀତ ଗାଇଲା କି ? ସେ କଥା କିଏ କହିବ !

କିନ୍ତୁ ଗୋଟିଏ କଥା ମୁଁ ଜାଣିଛି । ସବୁ ଭଲପିଲା ମିଳିମିଶି ଖେଳନ୍ତି, ନାଚନ୍ତି ଆଉ ଗୀତ ଗାଆନ୍ତି । ■

**ମଧୁପାଟଣା, କଟକ**

# ମୋ ପୁଅକୁ ଟେରା କଲା କିଏ ?

• ଡକ୍ଟର ମହେଶ୍ୱର ମହାନ୍ତି

**ଗୋ**ଟିଏ ଗାଆଁରେ ମାଆଟିଏ ପୁଅଟିଏ ଥାଆନ୍ତି । ଦୁହେଁ ଭାରି ଗରିବ । ଶାଗଭାତ ଖାଇ କୌଣସି ମତେ ଦିନ କାଟନ୍ତି । ମାଆ ମନେ ମନେ ଭାବେ, ପୁଅଟି ମୋର ସାନ ଅଛି । ଟିକିଏ ହୁସିଆର ହୋଇଗଲେ, ବଳେ ଦି ପଇସା ରୋଜଗାର କରିବ । ସେତେବେଳେ ଆଉ ଦୁଃଖ ରହିବ ନାହିଁ ।

ସତକୁ ସତ ପୁଅ ବଡ ହୋଇଗଲା । ପର ଘରେ ମୂଲଲାଗି ନିଜକୁ ପୋଷିଲା, ମାଆକୁ ପୋଷିଲା । ପୁଅ ଦିନେ ମାଆକୁ କହିଲା ''ତୁମେ ଦିନସାରା ପର ଘରେ ଖଟି ଖଟି ସଞ୍ଜକୁ ଯାହା ଆଣୁଛି ସେଥିରେ ତ ପେଟକୁ ଅଣ୍ଟୁନାହିଁ କି ପିଠିକି ଅଣ୍ଟୁନାହିଁ । ଦୁନିଆରେ ପୁଣି ବଞ୍ଚିବା କେମିତି ? ତେଣୁ ତୁ ଘରେ ଥାଆ । ମୁଁ ଯାଉଛି ବିଦେଶ । ଏଇ ଗାଁର ତ ଘନିଆ, ମନିଆ, ଚେମା କେତେ କେତେ ଲୋକ ବିଦେଶ ଯାଇ ଢ଼େର ଢ଼େର ପଇସା କମାଇ ଭଲରେ ଚଳୁଛନ୍ତି । ମୁଁ ଗଲେ କ୍ଷତି କଅଣ ?''





ମାଆ ତାର ପୁଅକୁ ମନାକରି ପାରିଲା ନାହିଁ । ଆଖିରୁ ଲୁହପୋଛି କହିଲା, "ପୁଅରେ ପରଧନକୁ ଲୋଭ କରିବୁ ନାହିଁ । ଦିହ ମେହେନତ କରି ଯାହା ଦି' ପଇସା ରୋଜଗାର କରିବୁ ସେତିକିରେ ଆମର ଅଧିକାର । ପରଧନକୁ ବିଷ ବୋଲି ମଣିବୁ ।"

ତା' ପରଦିନ ଶୁକୁଟା ମାଆଠଉଁ ବିଦାୟ ନେଇ ଗାଆଁ ଠାକୁରାଣୀଙ୍କ ପାଖରେ ମୁଣ୍ଡିଆମାରି ବିଦେଶ ବାହାରିଲା । ବିଦେଶ ବୋଇଲେ ତ କୋଉ ଇଂଲଣ୍ଡ କି ଆମେରିକା ନୁହେଁ । ଦଉଡ଼ି ଦଉଡ଼ି କଲିକତା ବା କାଳିମାଟି । ଶୁକୁଟା ଯାଇ କଲିକତା ସହରରେ ଏଣେ ତେଣେ ବୁଲି ବୁଲି ଶେଷରେ ବହୁ କଷ୍ଟରେ ଗୋଟିଏ କଳ ଘରେ ଚାକିରି ପାଇଲା । ସେଇଦିନ ଖୁସିରେ ମାଆ ପାଖକୁ ଚିଠି ଲେଖିଲା - "ମାଆ ଜାଣିବୁ, ମୋର କମ୍ପାନୀ ଘରେ ଚାକିରି ହୋଇଗଲା । ଏଣିକି ମୁଁ ଢ଼େର ପଇସା ତୋ ପାଖକୁ ପଠାଇବି ।"

ଶୁକୁଟା ମାଆ ଖୁସିରେ ଗାଆଁ ଠାକୁରାଣୀଙ୍କ ପାଖରେ ଯାଇ ମୁଣ୍ଡିଆ ମାରିଲା । ତା'ପରେ ଫେରନ୍ତା ଡାକରେ ଚିଠି ଲେଖିଲା- "ପୁଅରେ, ସହର ବଜାର ଜାଗା । ଆମର ପଇସା ନହେଲେ ନାହିଁ ତୁ କିନ୍ତୁ ହୁସିଆରରେ ଚଳୁଥିବୁ ।"

ଶୁକୁଟା ତା ଜୀବନରେ କେବେ ଏକାବେଳେ ଦଶଟି ଟଙ୍କା ମଧ ଗଣି ନଥିଲା । ଆଜି ଯେତେବେଳେ ସେ ଦରମା ପାଇ କୋଡ଼ି କୋଡ଼ି କରି ଚାରିକୋଡ଼ି ଟଙ୍କା ଗଣିଲା, ତା ମନ କାହିଁରେ କଅଣ ହୋଇଗଲା । ସେ ଏଥର ଛିଣ୍ଡା ତେଲଚିକିଟା ଗାମୁଛା ଖଣ୍ଡକୁ କାନ୍ଧରୁ ଫୋପାଡ଼ି ଦେଇ ଖଣ୍ଡେ ନାଲି-ଧଳା ମିଶା ଡୋରିଆ କପଡାର କାମିଜ କିଣି ପିନ୍ଧିଲା । ରାସ୍ତାକଡର ମୋଚିଠାରୁ ଖୁବ୍ ଦର କଷାକଷି କରି ହଳେ ଚପଲ କିଣି ପାଦରେ ମାଡ଼ିଲା । ସେ ଭାବିଲା, ସତରେ ସେ ଗୋଟିଏ

ବାବୁ ହୋଇଗଲାଣି । ମଫସଲ ଗାଆଁର ବାପ ଛେଉଣ୍ଡ ଶୁକୁଟା । କଲିକତା ସହରରେ ଗୋଟାଏ ବାବୁ ବନିଗଲା ।

ଶୁକୁଟାର ପିଲାଳିଆ ସରଳ ମନ ଏଣିକି ବଦଳିବାକୁ ଲାଗିଲା । ସେ କେତେକ ମନ୍ଦ ଲୋକଙ୍କ ସାଙ୍ଗରେ ପଡ଼ି ଗୋଟିଏ ଚୋର ଦଳରେ ମିଶିଲା । ଦିନରେ ସେ କାରଖାନାରେ କାମ କରେ । ରାତିରେ ଚୋରମାନଙ୍କ ସହ ମିଶି ସିନ୍ଧିଗାତ କରି ଟଙ୍କା ସୁନା ଚୋରିକରେ ।

କିଛିଦିନ ପରେ ଶୁକୁଟା ହାତରେ ବେଶ କିଛି ପାଣ୍ଠି ହୋଇଗଲା । ପୋଲିସ ଲୋକେ ସନ୍ଦେହ କରି ତାର ପିଛା କରିବାକୁ ଲାଗିଲେ । ଏଣିକି ଶୁକୁଟାର ସବୁବେଳେ ଭୟ, କାଳେ କେତେବେଳେ ସେ ଧରାପଡ଼ିଯିବ କି ? ସେ ତେଣୁ ସ୍ଥିର କଲା - ଆଉ ବେଶୀ ଦିନ କଲିକତା ସହରରେ ରହିବା ନିରାପଦ ନୁହେଁ । ଯେତିକି ପାଣ୍ଠି ଜମେଇଲାଣି ତାହା ଢ଼େର । ଗାଆଁରେ ସେଇତକ ବସିକରି ଖାଇଲେ ଜୀବନଯାକ ସରିବ ନାହିଁ । ଆଉ ଅଧିକ ନ ହେଲା ନାହିଁ । ଚାକିରି କଅଣ ଦରକାର ? ଏଇକଥା ଭାବି ଶୁକୁଟା ତା ମାଆ ପାଖକୁ ଚିଠି ଲେଖିଲା - ''ମାଆ, ଆମ ଘରର ବାଡ଼ିପଟ ଚାକୁଣ୍ଡାଗଛ ମୂଳେ ଗୋଟିଏ ଗାତ ଖୋଳି ଦେଇଥିବୁ । ମୁଁ ଆଗାମୀ ଅମାବାସ୍ୟା ତିଥିରେ ଯାଇ ଘରେ ପହଞ୍ଚିବି । ମାଆ ବିଚାରି ଛନ୍ଦକପଟ କିଛି ଜାଣେ ନାହିଁ । ସେ ଭାବିଲା, ଚଗଲାଟା, କ'ଣ ନାଇଁ କଅଣ ପାଇଁ ଗୋଟାଏ ଗାତ ଖୋଳିବାକୁ କହିଛି । ସେ ତେଣୁ କାହାକୁ କିଛି ନ କହି ପୁଅର କଥା ଅନୁସାରେ ଚୁପଚାପ ବାଡ଼ିପଛ ଚାକୁଣ୍ଡା ଗଛମୂଳେ ଗାତଟିଏ ଖୋଳିଦେଲା । ତା' ପରେ ପୁଅର ଆସିବା ବାଟକୁ ଅପେକ୍ଷା କରି ରହିଲା ।



ଶୁକୁଟା ତେଣେ ତାର ସବୁ ପାଣ୍ଠିକୁ ଏକାଠି କରି ପୁଡାବାନ୍ଧି ରେଳରେ ଟିକଟ କାଟିଲା ।

ଅମାବାସ୍ୟା ଦିନ ରାତି ଘଡ଼ିଏ ସୁଦ୍ଧା ଯାଇ ଗାଆଁରେ ପହଞ୍ଚିଲା । ଗାଆଁ ଦାଣ୍ଡରେ ନଯାଇ ଲୁଚି ଲୁଚି ବାଡ଼ିପଟେ ଯାଇ ଚାକୁଣ୍ଡା ଗଛମୂଳେ ପହଞ୍ଚିଲା । ଦେଖିଲା ମାଆ ତାର ସତକୁ ସତ ଗାତଟିଏ ଖୋଳିଛି । ସେ ତା'ର ପାଣ୍ଠିତକ ସେଇଠି ପୋତିଦେଲା । ତା' ପରେ ଭଲକରି ମାଟି ଚଢ଼ାଇ ଦେଲା । ତା' ପରେ ଯାଇ ଘରେ ପହଞ୍ଚିଲା ।

ଏତେଦିନ ପରେ ପୁଅକୁ ପାଇ ଶୁକୁଟା ମା'ର ଆନନ୍ଦର ସୀମା ନଥାଏ । ତା' ପରଦିନ ସକାଳୁ ଗାଆଁରେ ଖବର ହୋଇଗଲା ଶୁକୁଟା ଘରକୁ ଆସିଛି । ଶୁକଟା ତା ମୁଣ୍ଡରେ ବବୁରି ବାଳ ରଖିଛି । ନାକତଳେ ଅଧା ନିଶ । ତାର ହାଡୁଆ ଗାଲ ପୂରାପୂରି ଗୋଲ ବନିଯାଇଛି । ବେକରେ ଗୋଟିଏ ସୁନାଚେନ ପକାଇଛି । ବାଁ ହାତରେ ଗୋଟିଏ ଘଡ଼ି । ଖବର ପାଇ ଶୁକୁଟାର ସାଙ୍ଗ ହଗୁରା, ଢଗୁଆ, କାଳିଆ ସମସ୍ତେ ଆସି ତାକୁ ଘେରିଗଲେ । କଲିକତା ସହର ବିଷୟରେ କେତେ କ'ଣ ତାକୁ ପଚାରିଲେ । କିନ୍ତୁ ଶୁକୁଟାତ ଆଉ ଆଗ ଶୁକୁଟା ନୁହେଁ । ସେ ଏବେ ହଜାର ହଜାର ଟଙ୍କାର ମାଲିକ । ତା ଭଳି ପଇସାବାଲା ଲୋକ ଏ ଗାଁରେ କେତେଜଣ ଅଛନ୍ତି ?

ସାଙ୍ଗମାନେ ଦେଖିଲେ ଶୁକୁଟାର ହାବ ଭାବ ସବୁ ବଦଳିଯାଇଛି । ସେ ବେଶୀ କଥାବାର୍ତ୍ତା କରୁନାହିଁ । ସେ କାହାକୁ ସିଧା ନ ଚାହିଁ ଟେରେଇ ଟେରେଇ ଚାହୁଁଚି । ସମସ୍ତେ ଭାବିଲେ, ଶୁକୁଟା କଳ ବାଡ଼ିରେ ଖଟି ଖଟି ତାର ବେକଟା ବଙ୍କା ହୋଇଯାଇଛି ଓ ଆଖି ଦିଇଟା ଟେରା ହୋଇ ଯାଇଛି ।

ଶୁକୁଟା ମାଆ ମୁଣ୍ଡ ବାଡେଇଲା । ସେ କହିଲା - ''ମୋ ପୁଅକୁ କିଏ ଗୁଣି-ଗାରିଡ଼ି କରିଛି । ତେଣୁ ସେ ସିଧା ନଚାହିଁ ସମସ୍ତଙ୍କୁ ଟେରେଇ କରି ଚାହୁଁଛି ।'' ମାଆର କଥା ଶୁଣି ଶୁକୁଟା ଖାଲି ମୁରୁକି ମୁରୁକି ହସିଲା । କଥାଟା ଯେମିତି ତା ମନକୁ ପାଇଲା ନାହିଁ । ଗଛମୂଳେ ପୁଅ କଅଣ ପୋତିଛି ବୋଲି ମାଆ ତାର ଜାଣିବାକୁ କେତେଥର ଉଙ୍କି ମାରିଲାଣି । ହେଲେ ଶୁକୁଟା ବାରଣ କରିଛି, ସେ ବିଷୟରେ ସାଇପଡ଼ିଶା ସାଙ୍ଗ ସାଥୀ କାହାକୁ କିଛି ନକହିବାକୁ । ହେଲେ ପୁଅର କଅଣ ହୋଇଛି । ସେ ଏମିତି ଟେରେଇ କରି ଚାହୁଁଛି କାହିଁକି ?

ଗାଆଁ ଚାହାଳିର ନରି ଅବଧାନେ ସମସ୍ତଙ୍କର ମୁରବି ଭଳି । ତାଙ୍କୁ ସବୁକଥା ଜଣା । ଶୁକୁଟା ମାଆ ଦିନେ ସକାଳୁ ଯାଇ ତାଙ୍କ ପାଖରେ ପହଞ୍ଚିଲା ଓ ସବୁକଥା

କହିଲା । ନରି ଅବଧାନେ କହିଲେ - 'ବୁଝିଲୁ ଶୁକୁଟା ମାଆ, ତୋ ପୁଅ ଠିକ୍‌ଅଛି । ରୋଗ ବଇରାଗ ତା ଠେଇଁ କିଛି ହୋଇନାହିଁ । ମୁଁ ଭାବୁଛି ତୋ ପୁଅଠେଇଁ ଲକ୍ଷ୍ମୀ ବିଜେ ହୋଇଛନ୍ତି । କିଛି ପାଣି ବୋଧେ ହାତପଇଠ ହୋଇଛି । ଶାସ୍ତ୍ର କହୁଛି ଲକ୍ଷ୍ମୀ ହେଉଛନ୍ତି ଟେରୀ । ସେ ଯାହା ଘରେ ବିଜେ କରନ୍ତି, ସେ ଲୋକ ଦୁସରା ଲୋକଙ୍କୁ ଆଉ ପାସଙ୍ଗରେ ପକାଏ ନାହିଁ । ତା ମନରେ ଗର୍ବ ଆସିଯାଏ । ସେ ବେଖାତିର କରି ଅନ୍ୟମାନଙ୍କୁ ଟେରେଇ ଟେରେଇ ଚାହେଁ ।''

ଶୁକୁଟା ମାଆ କହିଲା - ଏଇ ଗାଆଁର ଚେମା, ଘନିଆ, ମନିଆ ଇମିତି କେତେ ଲୋକ ତ ବିଦେଶରେ ଥାଇ ଟଙ୍କା ରୋଜଗାର କରି ଭଲରେ ଚଳୁଛନ୍ତି । ସେମାନଙ୍କର କାହିଁ କିଛି ହେଉନାହିଁ । ମୋ ପୁଅଟା ଏମିତି କି ପାପ କଲା ? ଅବଧାନ କହିଲେ ''ସେ କଥା ତୁ ବୁଝିପାରିବୁ ନାହିଁ ଶୁକୁଟା ମାଆ । ଝାଳବୁହା ଧନ ଚୋରି ଧନ ଏକା ନୁହେଁ । ଚେମା, ଘନିଆ, ଯାହା ରୋଜଗାର କରୁଛନ୍ତି, ସେ ସବୁ ହେଉଛି ଝାଳବୁହା ପଇସା । ହେଲେ ତୋ ପୁଅ କେଉଁଠୁ ରାତାରାତି ବୋଧେ କିଛି ଚୋରାମାଲ ଉଠାଇ ଆଣିଛି ।''

ଶୁକୁଟା ମାଆ ଅବଧାନଙ୍କ କଥା ଶୁଣି ଚୁପଚାପ ଘରକୁ ଫେରିଲା । ତା' ମନ ମୋଟେ ବୁଝୁ ନଥାଏ । ଶୁକୁଟାକୁ ଯେତେ ପଚାରିଲେ ସେ କିଛି କହୁ ନଥାଏ । ଖାଲି ମୁରୁକି ମୁରୁକି ହସୁଥାଏ ।

ସତକୁ ସତ ଶୁକୁଟା ଦିନେ ଧରାପଡ଼ିଲା । ପୋଲିସ ଲୋକେ ତାର ପିଛା କରୁଥିଲେ । ସେଦିନ ଦଳେ ପୋଲିସ ବନ୍ଧୁକ ଧରି ଜିପ ଗାଡ଼ିରେ ଆସି ଶୁକୁଟାର ଘରକୁ ଘେରିଗଲେ । ଘରର ବାଡ଼ି ସବୁ ଆଡ଼ ଖୋଳି ପକାଇଲେ । ଗାତୁଆ ମୂଷା ଭଳି ଚୋରି ମାଲତକ ସେ ଯେଉଁ ଗାତରେ ପୋତିଥିଲା, ପୋଲିସ ଲୋକେ ତାକୁ ଖୋଳି ବାହାର କଲେ । ଶୁକୁଟା ଏବେ ଆଉ ଯାଏ କୁଆଡ଼େ । ପୋଲିସ ଲାଠିରେ ତା ଦେହରେ ଦି ଚାରି ଖୁନ୍ଦା ଦେଇ ଯେତେବେଳେ ହାତକଡ଼ି ପକାଇ ତାକୁ ଥାନାକୁ ନେଲେ ଗାଆଁ ଯାକର ଲୋକେ ଦେଖିଲେ, ଶୁକୁଟାର ଟେରା ଆଖି ବିଲ୍‌କୁଲ ଭଲ ହୋଇ ଯାଇଛି । ସେ ଖାଲି ଆକୁଳ ବିକଳ ହୋଇ ସମସ୍ତଙ୍କୁ ଢଳ ଢଳ କରି ଚାହିଁଛି । ■

କେନ୍ଦୁଝର କଲୋନୀ, କଟକ - ୮

# ମାଟି ଛୁଇଁଲେ ସୁନା

● ପୁଣ୍ୟପ୍ରଭା ଦେବୀ



ରାଜା ଅଭିଜିତଙ୍କ ବାପା ମରିଗଲା ପରଠାରୁ ରାଜ୍ୟରେ ସୁଖ ସରି ସରି ଯାଇଥିଲା । ଫସଲ ନ ହେବାରୁ ଲୋକମାନେ ଖାଇବାକୁ ପାଉ ନଥିଲେ । ଚୋରି ତସ୍କରି ଆରମ୍ଭ ହୋଇଗଲା । ରାଜ୍ୟରେ ଅରାଜକତା ବ୍ୟାପିଗଲା । ଅଭିଜିତଙ୍କର ବୟସ କମ୍ ଥିଲା । ରାଜକାର୍ଯ୍ୟ ବା ସଂସାର ଧର୍ମ କୌଣସିଥିରେ କିଛି ଅଭିଜ୍ଞତା ନଥିଲା ତାଙ୍କର । ସେ ତ ମହାଚିନ୍ତାରେ ପଡ଼ିଗଲେ ।

ଏଇ ସମୟରେ ତାଙ୍କୁ ଖବର ମିଳିଲା

ଯେ ତାଙ୍କ ପଡ଼ୋଶୀ ରାଜ୍ୟ ବହୁତ ଉନ୍ନତି କରୁଛି । ସେ ରାଜ୍ୟରେ ପୁରୁଷୋତ୍ତମ ନାମରେ ଜଣେ ଲୋକ ଅଛନ୍ତି । ସେ ମାଟି ଛୁଇଁଦେଲେ କୁଆଡ଼େ ତ ସୁନା ପାଲଟିଯାଉଛି ।

ଅଭିଜିତ ଏବେ ଭାବିହେଲେ । ପୁରୁଷୋତ୍ତମଙ୍କୁ କେମିତି ତାଙ୍କ ରାଜ୍ୟକୁ ନେଇ ଆସିବେ କଳେ ବଳେ କୌଶଳେ । ପୁରୁଷୋତ୍ତମ ଏଠାକୁ ଆସିଗଲେ ତାଙ୍କ ରାଜ୍ୟରେ ଆଉ ଅଭାବ ରହିବ ନାହିଁ । କାରଣ ସେ ତ ମାଟି ଛୁଇଁଦେଲେ ସୁନା ପାଲଟିଯିବ ।

ରାଜା ପୁରୁଷୋତ୍ତମଙ୍କ ପାଖକୁ ଖବର ପଠାଇଲେ । ସେ ଆସିଗଲେ ତାଙ୍କୁ ଗୋଟିଏ ମନ୍ତ୍ରୀ କରିଦେବେ । ଜମିବାଡ଼ି, ଯାନବାହନ ଆଉ କେତେ କଅଣ ତାଙ୍କୁ ଉପହାର ଦେଇଦେବେ । କିନ୍ତୁ ପୁରୁଷୋତ୍ତମ ଏ ସବୁ ପ୍ରଲୋଭନରେ ରାଜି ହେଲେ ନାହିଁ । ସେଠି ବି ତ ସେ ମହାସମ୍ମାନର ସହ ଅଛନ୍ତି । ତାଙ୍କ ଦେଶ ଏବଂ ତାଙ୍କ ରାଜ୍ୟକୁ ଛାଡ଼ି ସେ କାହିଁକି ଆସିବେ ଭଲା ?

ଅଭିଜିତ ଏବେ ଆଉ କ'ଣ କରିବେ । ମନ୍ତ୍ରୀଙ୍କ ସହିତ ଆଲୋଚନା କଲେ । ମନ୍ତ୍ରୀ କହିଲେ, ମହାରାଜ, କଳକୌଶଳଦ୍ୱାରା ଯେତେବେଳେ ନ ହେଲା ଏଣିକି ବଳ କୌଶଳ ହିଁ ପ୍ରୟୋଗ କରିବାକୁ ହେବ । ମତେ କେବଳ ଗୋଟିଏ ଉପାୟ ଦିଶୁଛି । ପୁରୁଷୋତ୍ତମଙ୍କୁ ଜବରଦସ୍ତି ନେଇ ଆସିବାକୁ ହେବ ।

ଅଭିଜିତ ତ ଶଙ୍କିଗଲେ । କହିଲେ କ'ଣ ଯୁଦ୍ଧ ? ନା ନା ସେକଥା ହେବ ନାହିଁ । ଲୋକେ ତ ଖାଇବା ବିନା ଦରମଲା ହୋଇଗଲେଣି । ଯୁଦ୍ଧ କିଏ କରିବ ?

ମନ୍ତ୍ରୀ ହସିଲେ । କହିଲେ, ମହାରାଜ, ମୁଁ କ'ଣ ଏତେ ମୂର୍ଖ ହୋଇଛି ଯେ ଯୁଦ୍ଧ କଥା ଚିନ୍ତା କରବି ? ଆମ ଶଙ୍କର ଡକାୟତକୁ ପଠାଇ ତାଙ୍କୁ ଧରି ଆଣିବ । ତାଙ୍କୁ ଏକ ଗୁପ୍ତ ସ୍ଥାନରେ ରଖି ତାଙ୍କଠାରୁ କାମ ହାସଲ କରିନେବା ।

ଭଲ କହୁଛ ! ପଡ଼ୋଶୀ ରାଜ୍ୟର ଶତ୍ରୁ ବନିଯିବା ତା'ହେଲେ !

ନାହିଁ ମହାରାଜ ! ସମସ୍ତଙ୍କୁ ଜଣା ଅଛି ଶଙ୍କର ଆଜିକାଲି ଚମ୍ବଲରେ ରହୁଛି ବୋଲି । ଆମକୁ କିଏ କାହିଁକି ସନ୍ଦେହ କରିବ ?

ସେଇଆ ହେଲା । ସତକୁ ସତ ଶଙ୍କର ଯାଇ ପୁରୁଷୋତ୍ତମଙ୍କୁ ଧରି ଆଣିଲା । ତାଙ୍କ ଆଖିରେ ବାନ୍ଧିଥିବା ପଟି ଖୋଲିଦେଇ ରାଜାଙ୍କ ସାମନାରେ ଉପସ୍ଥାପନ କରାଗଲା ।

ପୁରୁଷୋତ୍ତମ ତ କାବା ହୋଇ ଛିଡ଼ା ହୋଇଥିଲେ । ବୁଝିପାରୁ ନଥିଲେ ତାଙ୍କୁ ଏମିତି ଭାବରେ ଏଠିକି ଆଣିବାର ଉଦ୍ଦେଶ୍ୟ କ'ଣ ? ରାଜା ତାଙ୍କୁ ମନ୍ତ୍ରୀଙ୍କ ପାଖ ଆସନରେ ବସିବାକୁ ଆମନ୍ତ୍ରଣ କଲେ ।

ରାଜାଙ୍କ ଆଦେଶରେ ଜଣେ ଭୃତ୍ୟ ଗୋଟିଏ ରୂପାଥାଳିରେ ଥାଳିଏ ମାଟି ଧରି ତାଙ୍କ ପାଖରେ ଉପସ୍ଥିତ ହେଲେ । ରାଜା କହିଲେ, ପୁରୁଷୋତ୍ତମ, ଆମେ ଶୁଣିଲୁ ତମେ ଛୁଇଁଦେଲେ ମାଟି କୁଆଡ଼େ ସୁନା ପାଲଟିଯାଏ । ଏ ମାଟିତକ ଛୁଇଁଦେଇ ସୁନା କରିଦିଅ, ଆମେ ତମର ଯୋଗ୍ୟତାର ପ୍ରମାଣ ପାଇଯିବୁ । ନଚେତ୍ ତମ ଭଣ୍ଡତାର ଦଣ୍ଡ ଭୋଗିବାକୁ ହେବ ତମକୁ ।

ପୁରୁଷୋତ୍ତମ ତ ପ୍ରମାଦ ଗଣିଲେ । ରାଜା ଗୋଜା କଥା । କି ଭରସା ! ବୁଝିପାରିଲେ ତାଙ୍କ କାମିକାପଣିଆର ପ୍ରଚାର ଏବେ କିପରି ଭୁଲ୍ ବୁଝାମଣାର ଆକାର ଧରିଲାଣି । ସେ କହିଲେ, ମହାରାଜ, ମାଟିକୁ ଏମିତି ଛୁଇଁଦେଲେ ସୁନା ପାଲଟିଯାଏ ନାହିଁ । ସେଥିପାଇଁ ନିରଳସ ଖଟଣୀ ଏବଂ ସାଧନାର ଆବଶ୍ୟକ । ରାଜ୍ୟଟିକୁ ପୂରା ବର୍ଷଟିଏ ମୋ ଜିମା ଛାଡ଼ିଦେବାକୁ ହେବ । ତା'ହେଲେ ଯାଇ ଦେଖିବେ ମାଟି କେମିତି ସୁନା ପାଲଟିବ । ଛାମୁ ରାଜି ତ ?

ରାଜା କହିଲେ, ମୁଁ ରାଜି ଅଛି । ତମର ଯାହା ଦରକାର ହେବ, ଆମ ମନ୍ତ୍ରୀ ତମକୁ ସେ ସବୁ ଯୋଗାଇ ଦେବେ । ହେଲା ? ତା'ପରେ ଅଭିଜିତ ନିଶ୍ଚିତ ମନରେ କିଛିଦିନ ପାଇଁ ରାଜକର୍ମରୁ ଅବ୍ୟାହତି ନେଇ ଦେଶ ଭ୍ରମଣରେ ବାହାରିଗଲେ ।

ପୁଣି ବର୍ଷେ ପୂରିଗଲା । ରାଜାଙ୍କ ଡାକରା ଆସିଲା ପୁରୁଷୋତ୍ତମଙ୍କୁ । ରାଜା ପଚାରିଲେ ଏଥର ତମେ ମାଟି ଛୁଇଁ ଦେଲେ ସୁନା ହୋଇଯିବ ତ ?

ପୁରୁଷୋତ୍ତମ କହିଲେ, ଦେଖିବେ ଚାଲନ୍ତୁ, ମହାରାଜ । ଆପଣଙ୍କର ସାରା ରାଜ୍ୟଟା କେମିତି ସୁନା ପାଲଟି ଯାଇଛି ।

ରଥରେ ବସି ପୁରୁଷୋତ୍ତମଙ୍କ ସହିତ ଯାଉ ଯାଉ ରାଜା ଦେଖିଲେ ବାସ୍ତବିକ ତାଙ୍କ ରାଜ୍ୟଟା ସାରା ହସିଉଠୁଛି ଫୁଲରେ ଫଳରେ ଏବଂ ଧାନ, ଗହମ ଇତ୍ୟାଦି ଫସଲରେ । ରାଜା ଆଶ୍ଚର୍ଯ୍ୟ ହୋଇଗଲେ । ପଚାରିଲେ, ଆମର ତ ଏଠି ପ୍ରତ୍ୟେକ ବର୍ଷ ବର୍ଷା ଅଭାବରୁ ମରୁଡ଼ି ପଡୁଥିଲା । ନହେଲେ ଅତ୍ୟଧିକ ବର୍ଷା ଯୋଗୁଁ ବଢ଼ିହୋଇ ଫସଲ ସବୁ ଧୋଇହୋଇ ଯାଉଥିଲା । ତା'ହେଲେ କେମିତି ଏତେ ଫସଲ ହୋଇପାରିଲା ? ତମେ କେମିତି ସମ୍ଭବ କରିପାରିଲ ଏସବୁ ?

ପୁରୁଷୋତ୍ତମ କହିଲେ - ମହାରାଜ ! ଏସବୁ ହୋଇପାରିଛି କେବଳ ପାଣିର ବ୍ୟବସ୍ଥା ଯୋଗୁଁ । ମୁଁ ପ୍ରାୟ ପ୍ରତି ପାଞ୍ଚମାଇଲ୍ ଅନ୍ତରରେ ଗୋଟିଏ ଲେଖାଏଁ ବଡ଼ ପୋଖରୀ ଖୋଳାଇଛି । ସେଥିରେ ବର୍ଷାଦିନେ ବଢ଼ି ପାଣି ଭରିଯାଉଛି । ଖରାଦିନେ ଜମିକୁ ଆବଶ୍ୟକ ସମୟରେ ପାଣି ଯୋଗାଇ ଦିଆଯାଇ ପାରୁଛି ସେଇଠୁଁ । ସେଥିପାଇଁ ଏ ଫସଲ ସମ୍ଭବ ହୋଇପାରିଛି ।

ରାଜା ଅଭିଜିତ ଅତି ଖୁସି ହୋଇ ନିଜ ଗଳାରୁ ରତ୍ନମାଳ ବାହାରକରି ପୁରୁଷୋତ୍ତମକୁ ପିନ୍ଧାଇଦେଲେ । କହିଲେ, ବାସ୍ତବିକ୍, ତମେ ମାଟିକୁ ସୁନା କରିଦେଇପାର । ■

ସୂର୍ଯ୍ୟାବାଗ, ବିଶାଖାପାଟଣାମ୍ - ୫୩୦୦୨୦

# ସକାଳ ଆସୁଛି

**● ଡକ୍ଟର ହୃଷୀକେଶ ପଣ୍ଡା**

ଓଡ଼ିଶାର ତେରଟି ଜିଲ୍ଲା, ଏବେ ତିରିଶଟି ଜିଲ୍ଲାରେ ପରିଣତ ହୋଇଛି । ତା'ଭିତରୁ କୋରାପୁଟ ଜିଲ୍ଲା ସବୁଠାରୁ ବଡ଼ ଜିଲ୍ଲା ଥିଲା । ଏବେ ରାୟଗଡ଼ । ନବରଂଗପୁର, ମାଲ୍‌କାନଗିରି ଓ କୋରାପୁଟ ନାମରେ ଚାରିଟି ଜିଲ୍ଲା ରୂପ ନେଇଛି ।

ଚାରିଆଡ଼େ ବନ ପାହାଡ଼ ଘେରା ଏଇ ଆଦିବାସୀ ଜିଲ୍ଲା କୋରାପୁଟ । ପାହାଡ଼ପରେ ପାହାଡ଼ । ମାଳମାଳ ପାହାଡ଼ ଯେଉଁଠିକି ଅନେଇଲେ ପାହାଡ଼ ମାଳା ମୁଣ୍ଡ ଟେକିଛି, ସାଗୁଆ ଜଂଗଲରେ ପୂରି ଯାଇଛି ବନଭୂଇଁ । କେଉଁଠି କେଉଁଠି ଲୋକେ ଜଂଗଲ କାଟି ପଦା କରିଦେଲେଣି, ପୁଣି କିଛି ଲୋକଙ୍କ ଉଦ୍ୟମରେ ସେଠି ନୂଆ ଜଂଗଲ ଜନ୍ମ ନେଉଛି । ରାମାୟଣ ଯୁଗରେ କୋରାପୁଟର ଏଇ ଜଂଗଲ ଥିଲା ଦଣ୍ଡକାରଣ୍ୟ । ପ୍ରଭୁ ଶ୍ରୀରାମଚନ୍ଦ୍ର ସୀତା ଦେବୀଙ୍କ ସାଙ୍ଗରେ ବନବାସରେ ଆସି ଏହି ଦଣ୍ଡକାରଣ୍ୟରେ ପତ୍ରକୁଡ଼ିଆ କରି ବନବାସର ଜୀବନ କାଟିଥିଲେ । ଗୁପ୍ତେଶ୍ୱର ପୀଠ, ମୁଦୁଲିପଡ଼ାର ବଣ୍ଡାଜାତିଙ୍କ ଜୀବନଧାରାରେ ଏହାର ଅନେକ ଚିହ୍ନ ବର୍ଣ୍ଣ ଦେଖାଯାଏ ।



ଓଡ଼ିଶାର ବାଷଠୀ ପ୍ରକାର ଆଦିବାସୀ ମାନଙ୍କ ମଧ୍ୟରୁ କୋରାପୁଟ ଜିଲ୍ଲାରେ ଅଛନ୍ତି ସତର ପ୍ରକାର ଆଦିବାସୀ । ଏମାନଙ୍କ ମଧ୍ୟରେ କନ୍ଧଜାତିର ଲୋକଙ୍କ ସଂଖ୍ୟା ବେଶୀ । କୋରାପୁଟ ସହରଠାରୁ ପଚାଶ ଷାଠିଏ କିଲୋମିଟର ଦୂରରେ ଲକ୍ଷ୍ମୀପୁର ବ୍ଲକ୍ । ଲକ୍ଷ୍ମୀପୁରଠାରୁ ରାସ୍ତାଟିଏ ବାହାରି ପାହାଡ଼ିଘାଟୀ ଭିତର ଦେଇ ଆଗକୁ ସର୍ପିଳ ଗତିରେ ଯାଇ ନାରାୟଣ ପାଟଣାରେ ପହଁଞ୍ଚିଛି । ଲକ୍ଷ୍ମୀପୁର ବଜାରରୁ ନାରାୟଣପାଟଣା ରାସ୍ତାରେ ତିନିକିଲୋମିଟର ଆଗକୁ ଗଲେ ଗୋଟିଏ ଗାଆଁ ପଡ଼ିବ । ନାଁ ତାର କୁତ୍‌କାଝୋଲା । ଝୋଲାମାନେ ପାହାଡ଼ି ଝରଣା । ଝରଣାର ନାଁ କୁତ୍‌କା । ଏଇ କୁତ୍‌କା ଝୋଲା ପାଖରେ କୁତ୍‌କାଝୋଲା ଗାଆଁ । ଏଇଠି ସନ୍ୟାସୀର ଘର । ସନ୍ୟାସୀ ଜାତିରେ କନ୍ଧ । ଜଂଗଲରୁ କାଠ କାଟି ହରିଣ କୁଟୁରା ଶିକାର କରି ସେ ଚଳୁଥିଲା । ଦିନେ ପାଖର ପାହାଡ଼ ଚଢ଼ି ପୋଡୁଚାଷ ଆରମ୍ଭ କଲା ସବା ଉପରେ ଢ଼ାଲୁ ଜାଗାରେ । ନିଆଁ ଲଗାଇ ଗଛପତ୍ର ପୋଡ଼ି ସଫା କଲାପରେ ମାଣ୍ଡିଆ ବୁଣିଲା, ହଳଦୀ ଅଦା ଲଗାଇଲା, ଭଲ ଫସଲ ହେଲା ।

ପୋଡୁଚାଷକୁ ସରକାର ମନା କରିଛନ୍ତି । ଜଂଗଲ ପୋଡ଼ି ପୋଡୁଚାଷ କଲେ ପରିବେଶ ନଷ୍ଟ ହେଉଛି, ବର୍ଷା ଠିକ୍ ଠିକ୍ ହେଉନାହିଁ । ମରୁଡ଼ି ପଡ଼ି ମହାମାରୀ ଘୋଟିବାର ସମ୍ଭାବନା ରହିଛି । ପୋଡୁଚାଷ ନାଆଁରେ ଆଦିବାସୀମାନେ ସବୁ ପାହାଡ଼ ଜଂଗଲରେ ନିଆଁଲଗାଇ ସଫା କରିଦେଉଛନ୍ତି । ଏଇଥିପାଇଁ ସରକାର କଟକଣା ଜାରିକରିଛନ୍ତି । ହେଲେ, କୁତ୍‌କାଝୋଲା, ତାରପାଖେ ଉଚ୍ଚା ଉଚ୍ଚା ପାହାଡ଼ ଘେରି ରହିଥିବାରୁ ବାଘଭାଲୁ ହିଂସ୍ରଜନ୍ତୁ ବେଶୀ ରହନ୍ତି । ସରକାରୀ ଅଫିସରଙ୍କ ଗାଡ଼ି ଏଠାକୁ ବେଶୀ ଆସିପାରେ ନାହିଁ, ସନ୍ୟାସୀତ କନ୍ଧ ପିଲା, ତାକୁ ବା ବାଘ ଭାଲୁଙ୍କୁ ଡର ଆସିବ କାହୁଁ ?

ସେହି ଘନ ଜଙ୍ଗଲ ପାହାଡ଼ ଢ଼ାଲୁରେ ପୋଡୁଚାଷ କରୁ କରୁ ଦିନେ ସନ୍ୟାସୀ ଦେଶୀ ମହୁଲି ମଦ ରାନ୍ଧିବା ଆରମ୍ଭକଲା । ବଣ ମୁଲକର ଆଦିବାସୀମାନଙ୍କର ମଦ ହେଉଛି ସବୁଠାରୁ ବଡ଼ନିଶା । ଖାଇବାକୁ ମିଳୁ କି ନମିଳୁ, ପିନ୍ଧିବାକୁ ଥାଉ ବା ନଥାଉ ମଦଟିକେ ପିଇବାକୁ ପଡ଼ିବ ।



ସନ୍ୟାସୀ ସେହିକଥା ଚିନ୍ତାକରି ଦୁଇପଇସା ବେଶୀ ରୋଜ୍‌ଗାର କରିବା ନିଶାରେ ମହୁଲିମଦର ପୋଚ ଆଣି ଗଦା କଲା । ମହୁଲିର ବାସ୍ନା ପାଇ ବଣମୂଲକର ଆଖ ପାଖ ଗାଆଁରେ ଆଦିବାସୀ ମାନେ ଧୀରେ ଧୀରେ ସନ୍ୟାସୀର ଭାଟିରେ ଆସି ପହଞ୍ଚିଲେ । ମଦ ରନ୍ଧା, ମଦ ବିକ୍ରୀବଟା, ମଦପିଆ ଚାଲିଲା । ଧୀରେ ଧରେ ଗହଳି ବଢ଼ିଲା ।

ହାଟ ଫେରନ୍ତା ଆଦିବାସୀ ମାଇପି, ବଣଜଂଗଲରେ ଫଳମୂଳ, ଝଟାଜାଳ କି କନ୍ଦମୂଳ ଖୋଜୁଥିବା ଧାଂଗଡ଼ା ଧାଂଗଡ଼ୀ ମାନେ ଆସି ପହଞ୍ଚିଲେ । ଭାଟିବେଶ୍ ଚାଲିଲା - ପଇସାବି ରୋଜ୍‌ଗାର ହେଲା । ଦିନେ ରାତିରେ ସନ୍ୟାସୀ ନିଦରେ ସ୍ୱପ୍ନ ଦେଖିଲା, ବଡ଼ ନାଗ ସାପଟିଏ ମଦରନ୍ଧା ଜାଗାରେ ଆସି ଘୂରୁଛି । ନିଦ ଭାଙ୍ଗିଗଲାପରେ ସକାଳେ ସମସ୍ତଙ୍କୁ ଡାକି ସେ ସ୍ୱପ୍ନ କଥା କହିଲା, ସମସ୍ତେ ତା'କଥାକୁ ହସିଉଡ଼ାଇ ଦେଲେ । ସେଦିନ ରାତିରେ ବି ସେ ସେହି ସାପକୁ ସେଠି ଘୂରିବୁଲୁଥିବାର ଓ ମାଟିତଳେ ଶିବଲିଙ୍ଗ ଥିବାର ସ୍ୱପ୍ନ ଦେଖିଲା ।

ପରଦିନ ସକାଳେ ସତକୁ ସତ ନାଗସାପଟିଏ ସେଠି ବୁଲୁଥିବାର ଦେଖି, ଲୋକେ ତାକୁ ଠେଙ୍ଗାରେ ବାଡ଼େଇ ମାରିଦେଲେ । ହେଲେ ରାତିକୁ ସନ୍ୟାସୀ ସ୍ୱପ୍ନ ଦେଖିଲା, ଗୁପ୍ତେଶ୍ୱର ଶିବ ତାକୁ କହୁଛନ୍ତି ପୁଅ ମୋ ନାଗକୁ ପଠାଇଥିଲି, ସେଠି ମାଟିତଳେ ମୋର ଲିଙ୍ଗ ଅଛି ତାକୁ ଖୋଳି ପ୍ରତିଷ୍ଠାକର, କଳିଯୁଗ ସରିଆସିଲାଣି ସତ୍ୟଯୁଗ ଆସି ଗଲାଣି । ତୁ ଲୋକଙ୍କ ଭିତରେ ଧର୍ମକଥା ପ୍ରଚାର କର, ଲୋକଙ୍କୁ ସତ୍‌ପଥକୁ ଆଣ୍ । କହିଦେଇ ଶିବ ଉଭେଇ ଗଲେ ।

ପରଦିନ ସକାଳୁ ସନ୍ୟାସୀ ସମସ୍ତଙ୍କୁ ଡାକି ସ୍ୱପ୍ନ କଥା କହିଲା । ସମସ୍ତେ ଲାଗି ସେ ସ୍ଥାନ ଖୋଳିଲେ, ସତକୁ ସତ ସାତଫୁଟ ତଳକୁ ଗୋଟେ ଶିବଲିଙ୍ଗ ଥିବାର

ଦେଖାଗଲା । ତାକୁ ଉଦ୍ଧାରକଲା ସନ୍ନ୍ୟାସୀ । ଶିବଲିଙ୍ଗ ବାହାରିବା କଥା ଶୁଣି ସରଳ ନିରୀହ ଆଦିବାସୀମାନେ ସେ ଜାଗାକୁ ଧାଇଁବାକୁ ଲାଗିଲେ । ବଡ଼ ଭକ୍ତି ଆଉ ଶ୍ରଦ୍ଧାରେ ସନ୍ନ୍ୟାସୀ ଶିବଲିଙ୍ଗଙ୍କୁ ପ୍ରତିଷ୍ଠା କରି ପୂଜା କଲା ।

ସେ ବା କି ପୂଜା କରିବ । ମନ୍ତ୍ରତ ତାକୁ ଜଣାନାହିଁ, ଖାଲି ଫୁଲ ବେଲପତ୍ର ଧୂପ ଦେଇ ଭକ୍ତିରେ ଭଗବାନଙ୍କୁ ଡାକିଲା । ସେଦିନ ରାତିରେ ଶିବ ସନ୍ନ୍ୟାସୀକୁ ସ୍ୱପ୍ନରେ କହିଲେ, ଏଠି ମଦରନ୍ଧା ବନ୍ଦକର ଲୋକଙ୍କୁ ମଦନିଶା ଛାଡ଼ିବାକୁ କହ, ରୋଗୀମାନଙ୍କୁ ଚେରମୂଳିକା ଦେଇ ଭଲ କର । କେଉଁ ରୋଗପାଇଁ କେଉଁ ଔଷଧ ଲାଗିବ ସେକଥା ମୋତେ ପଚାରିଲେ ସ୍ୱପ୍ନରେ ସେସବୁ କଥା ମୁଁ ବତାଇ ଦେବି ।

ସନ୍ନ୍ୟାସୀ ପରଦିନ ସକାଳେ ଭକ୍ତଙ୍କୁ ସେକଥା କହିଲା । ବଣମୂଳକର ଆଦିବାସୀମାନେ ସରଳ ବିଶ୍ୱାସରେ ସନ୍ନ୍ୟାସୀ ପାଖକୁ ଧାଇଁଲେ । ଲୋକେ ଠୁଳହେଲେ ସନ୍ନ୍ୟାସୀ ପୂଜାକରି ବସେ । ବଡ଼ପାଟିରେ ଭଗବାନ ଶିବଙ୍କର ପ୍ରାର୍ଥନା ବୋଲେ, ଲୋକଙ୍କୁ ମଦ ଛାଡିଦେବାପାଇଁ, ନିଶା ନକରିବା ପାଇଁ ବତାଏ, ଗୋରୁ ଗାଈର ମାଂସ ନଖାଇବାକୁ କୁହେ ।

ଠାକୁରଙ୍କର ବେଲପତ୍ର ଓ ପାଦୁକା ଦେଇ ଧର୍ମବାଟରେ ଚାଲିବାକୁ କହେ । ଲୋକଙ୍କର ରୋଗ ବ୍ୟାଧିର କଥାଶୁଣି ଚେରମୂଳିକା ଦିଏ । ଲୋକେ ଅନେକେ ଭଲ ହୋଇଗଲେଣି ।

ସନ୍ନ୍ୟାସୀ ଏବେ ଆଉ ମଦ ବିକା କନ୍ଧ ଜୁଆନ୍ ନୁହେଁ, କି ଜଙ୍ଗଲି ଶିକାରୀ କନ୍ଧ ଧାଂଗଡ଼ା ନୁହେଁ । ସେ ସନ୍ନ୍ୟାସୀବାବା ।

ଅନ୍ଧାରୀ ବଣ ମୂଳକରେ ଏବେ ଚେତନାର ନିଆଁ ଲାଗିଛି । ଲୋକେ ଧୀରେ ଧୀରେ ନିଶାଛାଡ଼ି, ଜଙ୍ଗଲ ନ ଉଜାଡ଼ି ଭଲବାଟକୁ ଆସୁଛନ୍ତି । ଦିନରାତି ମନ୍ଦିରରେ ନାମକୀର୍ତ୍ତନ ଚାଲିଛି । ଅନ୍ଧାରୀ ବଣମୂଳକରେ ଯେମିତି ନୂଆ ସକାଳଟିଏ ଆସିଛି । ■

**ସହାୟକ କେନ୍ଦ୍ର ନିର୍ଦ୍ଦେଶକ ଆକାଶବାଣୀ ଜୟପୁର, କୋରାପୁଟ**

# କଥା ନ ମାନିବାର ଫଳ

● ଡକ୍ଟର ଲକ୍ଷ୍ମୀକାନ୍ତ ଖୁଣ୍ଟିଆ



କୌଣସି ଏକ ଆଶ୍ରମରେ ଜଣେ ସାଧୁବାବା ତାଙ୍କ ଶିଷ୍ୟ ସହିତ ରହୁଥିଲେ । ଶିଷ୍ୟଟି ବେଶ୍ ଗୁରୁଭକ୍ତ ଥିଲା । ଗୁରୁଙ୍କର କୌଣସି କଥା ତଳେ ପକାଉ ନଥିଲା ।

ଥରେ ସେ ଦୁହେଁ କୌଣସି ଏକ ରାଜ୍ୟରେ ଯାଇ ପହଞ୍ଚିଲେ । ସେଠାରେ ସବୁ ଜିନିଷ ଶସ୍ତାରେ ମିଳୁଥିଲା । ହେଲେ କିଛିଦିନ ରହିବା ପରେ ଗୁରୁ ଶିଷ୍ୟକୁ କହିଲେ ଦେଖ, ଏହା ଏକ ମୂର୍ଖର ରାଜ୍ୟ । ଏଠାରେ ବହୁତ ଦିନ ରହିବା ଠିକ୍ ହେବ ନାହିଁ । ବରଂ ଅନ୍ୟ ଏକ ରାଜ୍ୟକୁ ଚାଲିଯିବା ଉଚିତ ।

ଶିଷ୍ୟଟି ଗୁରୁଙ୍କର କଥାକୁ ଶୁଣିବାକୁ ପ୍ରସ୍ତୁତ ନଥିଲା । ସେ କହିଲା ରାଜା ମୂର୍ଖ ହେଲେ ଆମର କ'ଣ ହେଲା ।

ଏଠାରେ ରହି ଆମେ ବହୁତ ଧନ ରୋଜଗାର କରିପାରିବା । ଆଉ ଆରାମରେ କାଳ କାଟିପାରିବା ।

ଗୁରୁ କହିଲେ ମୋର ଶିଷ୍ୟ ହୋଇ ଏପରି ଜୀବନଧାରାକୁ ପସନ୍ଦ କରିଲୁ । ଦିନେ ଏଥିପାଇଁ ହଇରାଣ ହେବାକୁ ପଡ଼ିବ ।

ଗୁରୁଙ୍କର ଏଇ କଥା ତା' ଉପରେ କିଛି ପ୍ରଭାବ ପକାଇଲା ନାହିଁ ।

ତଥାପି ଗୁରୁ ତାକୁ ନିଜର ଗୋଟିଏ ମୁଦି ଦେଇ କହିଲେ, ଯେତେବେଳେ ତତେ କୌଣସି ବିପଦ ପଡ଼ିବ, ତେବେ ଏଇ ମୁଦିକୁ ହାତରେ ଘଷିଦେବୁ । ମୁଁ ସଙ୍ଗେ ସଙ୍ଗେ ଆସି ତତେ ରକ୍ଷା କରିବି । ଏତିକି କହି ଗୁରୁ ସେଠାରୁ ଚାଲିଗଲେ ।

ଗୁରୁ ଚାଲିଗଲାପରେ ଶିଷ୍ୟଟି ଔଷଧ ତିଆରି କରି ବିକିଲା । ଆଉ ବହୁତ ଧନ ରୋଜଗାର କରି ରଖିଲା । ଗୁରୁଙ୍କ ଆଶୀର୍ବାଦରୁ ଏତେ ଧନ ରୋଜଗାର କରିଥିବାରୁ ସେ ସେଥିରୁ କିଛି ଗୁରୁଙ୍କୁ ଦେବାକୁ ଚାହିଁଲା । ତେଣୁ ଥରେ ଗୁରୁ ଦେଇଥିବା ସେହି ମୁଦିକୁ ହାତରେ ଘଷିଲା । ଫଳରେ ଗୁରୁ ସଙ୍ଗେ ସଙ୍ଗେ ତା' ଆଗରେ ଆସି ଦେଖାଦେଲେ । ସେ ଗୁରୁଙ୍କୁ ଯଥା–ସମ୍ମାନ ଦେଇ କହିଲା– ''ଗୁରୁଦେବ ! ମୁଁ ମୋର ଏହି ଧନରୁ କିଛି ଦେବାକୁ ଚାହୁଁଛି ।''

ଗୁରୁ ଟିକେ ହସିଦେଇ କହିଲେ, ''ତୋର ଏଇ ଗୁରୁଭକ୍ତିରେ ମୁଁ ଅତ୍ୟନ୍ତ ସନ୍ତୁଷ୍ଟ ମାତ୍ର ତୋର ଏଇ ମୂର୍ଖପଣ ପାଇଁ ଦୟା ଆସୁଛି । ମୋର ଶିଷ୍ୟ ହୋଇ ମୋର ଆଦର୍ଶକୁ ଏତେ ଶୀଘ୍ର ଭୁଲିଗଲୁ ! ଧନ ଲୋଭରେ ତୁ ତୋର ଭବିଷ୍ୟତକୁ ନଷ୍ଟ କରିଦେବାକୁ ଚାହୁଁଛୁ । ତେବେ ସାବଧାନ ରହିଥିବୁ, ଏଇଟା ମୂର୍ଖଙ୍କର ରାଜ୍ୟ !'' ଏତିକି କହି ଗୁରୁ ନିଜ ବାଟରେ ଚାଲିଗଲେ ।

ଥରେ ଜଣେ ଚୋରକୁ ସେ ରାଜ୍ୟରେ ମୃତ୍ୟୁଦଣ୍ଡ ମିଳିଲା । ତାକୁ ନେଇ ଫାଶି ଦଉଡ଼ି ତା' ବେକରେ ଲଗାଇବାରୁ ତାହା ହୁଗୁଳା ହେଲା । ତେଣୁ ରାଜା ସଙ୍ଗେ ସଙ୍ଗେ ଆଦେଶ ଦେଲେ ଲୋକ ବଦଳାଇଦିଅ । ଯାହାର ବେକକୁ ଏ ଦଉଡ଼ି ହେଉଥିବ, ତାକୁ ଧରି ଆଣି ଫାଶି ଖୁଣ୍ଟରେ ଝୁଲାଇ ଦିଅ ।

ମୂର୍ଖ ରାଜାର ହୁକୁମ ପାଇ ଚୋରକୁ ଛାଡ଼ିଦେଇ ତାଙ୍କର ଲୋକମାନେ ସେହିଭଳି ମୋଟ ବେକ ଥିବା ଲୋକଟିଏ ଖୋଜିବାରେ ଲାଗିପଡ଼ିଲେ । ବହୁ ଖୋଜାଖୋଜି ପରେ ସେମାନେ ସେହି ଶିଷ୍ୟଟିକୁ ବାଛିଲେ । କାରଣ ତା'ର ବେକଟି ଦଉଡ଼ିକୁ ଠିକ୍ ହେଉଥିଲା । ଶିଷ୍ୟଟି ଯେତେ କାକୁତି ମିନତି ହେଲେ ମଧ୍ୟ ରଜାଙ୍କ ଲୋକେ ତାକୁ ଛାଡ଼ିଲେ ନାହିଁ, ବରଂ ତାକୁ ପିଟିବାରେ ଲାଗିଲେ । ସେ ମନକୁ ମନ ଭାବିଲା - ମୋ ଗୁରୁଙ୍କର କଥା ସତ ହେଲା । ମୁଁ ତାଙ୍କ କଥା ନ ମାନି କେଡ଼େ ଭୁଲ୍ କରିଦେଲି ?

ଏତିକିବେଳେ ସେ ନିଜର ମୁଦିଟିକୁ ଘଷିବାରେ ଲାଗିଲା ମୁଦିଟି ଘଷିବାରୁ ଗୁରୁ ଶୀଘ୍ର ଆସି ସେଠାରେ ଉପସ୍ଥିତ ହେଲେ । ଶିଷ୍ୟଟି ଯେ ବିପଦରେ ପଡ଼ିଛି ତାହା ବୁଝିବାକୁ ତାଙ୍କୁ ଡେରି ଲାଗିଲା ନାହିଁ । ସେ ନିଜର ଶିଷ୍ୟକୁ ବଳଦେଇ କହିଲେ ବ୍ୟସ୍ତ ହୁଅ ନାହିଁ । ମୁଁ ତୁମକୁ ନିଶ୍ଚୟ ରକ୍ଷା କରିବି । ସେ ସଙ୍ଗେ ସଙ୍ଗେ ରାଜା ପାଖରେ ଯାଇ ପହଞ୍ଚିଲେ । ଆଉ ରଜାଙ୍କୁ କହିଲେ- ହେ ରଜା ! ମୁଁ ଜଣେ ସାଧୁ । ତୁମକୁ କିଛି ମାଗିବାକୁ ଆସିଛି ।

ହଠାତ୍ ନିଜ ଦରବାରରେ ଜଣେ ସାଧୁବାବାଙ୍କୁ ଦେଖି ରଜା ଟିକେ ଡରିଗଲେ । ସେ ଅତି ବିନୟ ଭାବରେ କହିଲେ- ସାଧୁ ମହାରାଜ ! ମୁଁ ଆପଣଙ୍କର କିପରି ସେବା କରିପାରିବି, ମତେ କୁହନ୍ତୁ ।

ସାଧୁବାବା କହିଲେ - ଆଜି ଯାହାକୁ ଫାଶିଦେବାକୁ ତୁମର ଲୋକମାନେ ନେଉଛନ୍ତି, ସେ ମୋର ଶିଷ୍ୟ ଅଟେ । ତାକୁ ନ ମାରି ମତେ ଫାଶି ଖୁଣ୍ଟିରେ ଝୁଲାଇ ଦିଅନ୍ତୁ ।

ରଜା ଟିକେ ଆଶ୍ଚର୍ଯ୍ୟ ହୋଇ କହିଲେ- ସାଧୁବାବା ! ଆପଣ ତ କିଛି ଦୋଷ କରି ନାହାନ୍ତି । ତେବେ ଏଇ ଫାଶି ଖୁଣ୍ଟିରେ ଚଢ଼ିବାକୁ ଏତେ ଆଗ୍ରହୀ ହେଉଛନ୍ତି କାହିଁକି ?

ସାଧୁବାବା କହିଲେ- ମହାରାଜ ! ମୁଁ ତ ବୁଢ଼ା ହେଲିଣି । ଆଉ କେତେଦିନ ଏ ସଂସାରରେ ରହିବି ? ମୁଁ ଟିକେ ଶୀଘ୍ର ବୈକୁଣ୍ଠପୁରକୁ ଯିବାକୁ

ଚାହୁଁଛି । ଏତେ ଅଳ୍ପ ବୟସରୁ ମୋର ଏଇ ଶିଷ୍ୟଟି ବୈକୁଣ୍ଠପୁରକୁ ଚାଲିଯିବ । ମୋଠାରୁ ଶ୍ରେଷ୍ଠ ହୋଇଯିବ ! ମୁଁ ଏପରି ଅପମାନ ଜମା ସହିପାରିବି ନାହିଁ । ଗୁରୁ ହୋଇଥିବାରୁ ମୁଁ ତା' ଆଗରୁ ବୈକୁଣ୍ଠପୁରକୁ ଯିବାକୁ ଚାହୁଁଛି । ସେଠାରେ ବହୁତ ସୁଖ ଭୋଗ ମିଳିବ ।

ରଜା ଟିକେ ଭଲ ଭାବରେ ବୁଝିପାରିଲେ ନାହିଁ । ସେ କହିଲେ ସାଧୁବାବା ! ଆପଣ ଟିକେ ଭଲକରି ଏହାର ରହସ୍ୟଟା ବୁଝାଇ ଦିଅନ୍ତୁ ।

ସାଧୁବାବା କହିଲେ - ''ମହାରାଜ ! ଏହି ମୁହୂର୍ତ୍ତରେ ଯାହାକୁ ଫାଶି ଦିଆଯିବ । ସେ ସିଧାସଳଖ ବୈକୁଣ୍ଠପୁରରେ ପହଞ୍ଚିଯିବ ।''

ବୈକୁଣ୍ଠପୁରକୁ ଯିବାକଥା ଶୁଣି ମୂର୍ଖରାଜାଙ୍କର ଭାରି ଲୋଭ ହେଲା । ସେ ସଙ୍ଗେ ସଙ୍ଗେ ଆଦେଶ ଦେଲେ- ''ମୁଁ ଥାଉ ଥାଉ ଏଠାରେ ଆଉ କେହି ମୋ ଆଗରୁ ବୈକୁଣ୍ଠପୁରକୁ ଯାଇପାରିବେ ନାହିଁ । ସେଠାକାର ସୁଖଭୋଗ କରିବାର ଅଧିକାର କେବଳ ମୋର ଅଛି ।'' ଏହା କହି ସେ ସେହି ଶିଷ୍ୟକୁ ଆଡ଼େଇଦେଇ ନିଜକୁ ନିଜେ ଫାଶି ଖୁଣ୍ଟରେ ଝୁଲି ପଡ଼ିଲେ । ଲୋକେ ଏପରି ମୂର୍ଖ ରଜାଙ୍କର ମୃତ୍ୟୁରେ ବେଶ୍ ଖୁସି ହେଲେ । ଶିଷ୍ୟଟି ଗୁରୁଙ୍କର ଗୋଡ଼ତଳେ ପଡ଼ିଯାଇ କହିଲା- ଗୁରୁଦେବ ! ମୁଁ ଧନଲୋଭରେ ଆପଣଙ୍କର ଆଦର୍ଶକୁ ଭୁଲିଯାଇଥିଲି । ଫଳରେ ମୃତ୍ୟୁଦଣ୍ଡ ଭୋଗିବାକୁ ଯାଉଥିଲି । ଆଜି ମୁଁ ମୋର ଭୁଲ୍ ବୁଝିପାରିଛି । ଏଣିକି ଆପଣଙ୍କର ଆଦର୍ଶକୁ ମାନି ମୋର ଅବଶିଷ୍ଟ ଜୀବନ ବିତାଇ ଦେବି । ଏତିକି କହି ସେ ନିଜର ଗୁରୁଙ୍କ ସାଥୀରେ ଅନ୍ୟ ଦେଶକୁ ଚାଲିଗଲା । ■

ଶିକ୍ଷକ, ସରକାରୀ ଉଚ୍ଚ ବିଦ୍ୟାଳୟ, ଶହୀଦନଗର, ଭୁବନେଶ୍ୱର - ୭

# ରାଇଜର ନାଁ ପରିମଳପୁର

• ଡକ୍ଟର ଶୁଭେନ୍ଦ୍ରମୋହନ ଶ୍ରୀଚନ୍ଦନ ସିଂହ

ଏ ଗୋଟେ ରାଇଜର କଥା । ରାଇଜଟି ଖୁବ୍ ବଡ଼ ନୁହେଁ । ଛୋଟଟେ ମ ! ସେ ଛୋଟ ରାଇଜର ସୁନ୍ଦରିଆ ନାଁଟେ । ତା' ନାଁ ପରିମଳପୁର । ପରିମଳ କହିଲେ ସୁବାସ । ସୁଗନ୍ଧ । ମହକ । ପରିମଳକୁ ବି ପରିଷ୍କୃତି, ପରିପାଟୀ ଭାବରେ ନିଅନ୍ତି । ଆଉ ସେଠାର ରଜା ଥିଲେ କିଏ ? ରଜା ଥିଲେ ପରିମଳ ସିଂହ ।

ରଜାଙ୍କର ସଫା ସୁତରା ରହିବା ଓ ସଫା ପରିବେଶ ପାଇଁ ବଡ଼ ଆଗ୍ରହ । ସେ ତେଣୁ ସେଇପରି ସଫା ବୁଝାଉଥିବା ଶବ୍ଦକୁ ପସନ୍ଦ କରନ୍ତି । ତାଙ୍କର ମନ୍ତ୍ରୀ ଥିଲେ ସୁନିର୍ମଳ ସିଂହ । ସେନାପତି ଥିଲେ ନିର୍ମଳ ସିଂହ । ପୁରୋହିତଙ୍କର ନାଁ ସୁବିମଳ ମହାପାତ୍ର । ସଭାକବି ଥିଲେ ବିମଳ ମହାବ୍ୟାସ । ବିଦୂଷକ ଥିଲେ ଅମଳ ବୀରବଲ । ତାଙ୍କ ଦରବାରରେ ଏମିତିକା ନାଁର ସଭ୍ୟ ସବୁ ଥିଲେ ।



ବଡ଼ ସଉକିଆ ପରିମଳ ସିଂହ । ସେ ଚାହୁଁଥିଲେ ତାଙ୍କ ରାଇଜଟା ସୁନ୍ଦର ଚିକ୍ ଚିକ୍ ହଉ । କୋଉଠି କନା ଟୁକୁରା କି କାଗଜ ଖଣ୍ଡେ ପଡ଼ିବନି । ସବୁଠା ଥିବ ନିତିପର । ହେଲେ, ମଣିଷ ଚାହିଁବା ଅନୁସାରେ କାମଗୁଡ଼ା

ହୁଏକି ? ଇଚ୍ଛାଗୁଡ଼ାକ ଯଦି ଘୋଡ଼ା ହେଇଯାଆନ୍ତେ, ମଣିଷ ତ ଚଉଦ ଭୁବନ ବୁଲିଯାଆନ୍ତା ।

ରଜାଙ୍କ ଇଚ୍ଛାର ଠିକ୍ ବିପରୀତ ଅବସ୍ଥା ସେ ରାଇଜର । ଚାରିଆଡ଼ ଅପରିଷ୍କାର । ଗନ୍ଧିଆ । ଯେଉଁଠି ଦେଖ ଅଳିଆ କୁଢ଼ । ଲୋକେ ଯେଉଁଠି ପାରିଲେ, ଆବର୍ଜନା ପକାନ୍ତି । କ'ଣ ହେଇଛି ଏ ଘର, ଦୁଆର ! କ'ଣ ହେଇଛି ଗାଁ, ସହର । ନାଳଗୁଡ଼ାକ ମଇଳାଭରା । କଳା କଳା ନଳା ପାଣି । ଗନ୍ଧରେ ନାକ ଫାଟିଯିବ । ଅ ଅ ଲାଗିବ । ବାନ୍ତି ଆସିବ । ଟିକେ ବରଷା ହେଲେ ଅବସ୍ଥା ସରିଲା । ଲାଙ୍ଗୁଡ଼ିଆ ଭେଳା ଭେଳା । ମଇଳା ଟେଳା ଟେଳା । କଳିକତରା ଦଳ ଦଳ । ସବୁଆଡ଼ ମାଛି ଭଣ ଭଣ । ମାଛିଏ କହନ୍ତି ସେ ରାଇଜଟା ସେମାନଙ୍କର । ସେମାନେ ସେଠାର ମାଲିକ । ମଶାଏ ଗୁଣନ୍ତ ଗଣଗଣ । ସେମାନେ କହନ୍ତି—ହେ ! ତମେ ଗୁଡ଼ା କ'ଣ । ଆମର ଏ ମୁଲକ । ମୂଷା, ଚୁଚୁନ୍ଦ୍ରା ପଣ ପଣ । ମୂଷା ରହିଲେ ସାପ ଆସିବେ । ତେଣୁ ସେଠି ସାପ ବି ମଳାମଳା ।

ଏମିତି ଅବସ୍ଥାରେ ପାଖ ପଡ଼ିଶା ରାଇଜ ଲୋକେ ଟିପ୍ପଣୀ ଦିଅନ୍ତି, ଏଇଟା ପରିମଳପୁର ନୁହଁ ହୋ ଏଇଟା ପୂରାମଳପୁର । ରଜାଙ୍କ କାନରେ ଏକଥା ପଡ଼ିଲା । ଭାରି ଦୁଃଖ କଲେ । ହେଲେ, ଏଇଟା ତ ସତ କଥା । ସତଟାକୁ ସହିବାକୁ ହବ । ଘର ନିଆଁ ! ଯା ବୋଲି ଅଣ୍ଟିରେ ପୂରେଇବା ନା କ'ଣ ! ବରଂ ତା'ର ଗୋଟେ ଠିକଣା ସମାଧାନ କରିବ ।

ରାଇଜର ଲୋକେ ଆଦୌ ପରିଷ୍କାର ନୁହଁନ୍ତି ବୋଲି ଇ ଏଭଳି ଅବସ୍ଥା ଘଟୁଛି । କେତେ ରୋଗ ବଇରାଗରେ ସେମାନେ ସଡୁଛନ୍ତି । ଆଜି ଜର କାଲିକି ଝାଡ଼ା । ତା' ଆରଦିନ ଶରଦି । ମୁଣ୍ଡ ବଥା, ପେଟବଥା ତ ଅତି ସାଧାରଣ । ଲୋକେ ଭାବନ୍ତି ଏଇଟା ସେମାନଙ୍କ କପାଳ ଲିଖନ । ଦଇବ ଭିଆଣ । ତାହାକୁ କିଏ କରିବ ଆନ !

ରଜା ବହୁତ ଉପଦେଶ ଦେଲେ । ତାଙ୍କ ହୁକୁମଟା ହୁକୁମ ହେଇ ରହେ । କାଗଜରେ ଲେଖି ବିଜ୍ଞାପନ ଦେଲେ । ସେ କାଗଜଗୁଡ଼ିକ ମଇଳା କୁଢ଼ରେ ପଡ଼ିଲା । ରଜାଙ୍କ ସବୁ ଇଚ୍ଛା, ସବୁ ଉପଦେଶ ଏମିତି ଧୂଆଁରେ ରୂପ ନେଇଗଲା ।

ଏଥିରେ ରଜାଙ୍କ ମୁଣ୍ଡ ବଥେଇବ ଇ ବଥେଇବ । ସେ ତାଙ୍କ ପାରିଷଦମାନଙ୍କୁ ଡକେଇଲେ ।

ମନ୍ତ୍ରୀ କହିଲେ– ଆପଣ ଆଦୌ ବ୍ୟସ୍ତ ହୁଅନ୍ତୁ ନି । ଏହାର ସହଜ ଉପାୟ ଅଛି । ରାଇଜସାରା ଡେଙ୍ଗୁରା ଦବା, ଯାହା ଘର ଆଗରେ କି ପାଖରେ ମଇଳା ଥିବ, ତାକୁ ଜୋରିମାନା ହବ । ଏଥିରେ ଦୁଇଟି ଲାଭ । ଆମ ତହବିଲ ଭରି ଉଠିବ । ଗାଁ ସହର ସଫା ସୁତୁରା ହବ ।

ଜଣେ ସଭ୍ୟ କହିଲେ– ଠିକ୍ ଯେ, ଏମ୍‌ତିରେ କେତେ ଲୋକଙ୍କୁ ଜରିମାନା ହବ, ତା' ହିସାବ ହଉ । ଦେଖିଲେ ବୋଧହୁଏ ଗୋଟା ରାଇଜର ଲୋକଙ୍କୁ ଜରିମାନା ପଡ଼ିବ ।

କହିଲେ ରଜା - ତା'ହେଲେ ତ କଥା ସରିଯିବ ! ଆମ ଲୋକେ ବଡ଼ ଗରିବ । ଜରିମାନାଟା ସେମାନଙ୍କୁ ବାଧିବ । ତା'ଛଡ଼ା ଜରିମାନା ଦେଇସାରି ହାତ ବାନ୍ଧି ବସି ଯାଇପାରନ୍ତି ।



ସେନାପତି ତୁରନ୍ତ ଉଠି ପଡ଼ିଲେ । ସେ ତାଙ୍କ ତଲୱାର ବେଣ୍ଟରେ ହାତ ପକଉଥାଆନ୍ତି ।

ତା'ହେଲେ ତ ମୋ' ଉପାୟ କାମ କରିବ । ମାଡ଼କୁ ଡରନ୍ତି ମହାଦେବ । ଏ ସାମାନ୍ୟ ଲୋକଗୁଡ଼ା କି ଛାର ! ଅନୁମତି ଦିଅନ୍ତୁ ନା ! ପାଇକମାନଙ୍କୁ ନେଇ ମୁଁ ଘର ଘର ବୁଲିବି । ଭାଙ୍ଗିଦେବି ଲୋକଙ୍କ ଘର । ଏମ୍‌ତି ଠେଙ୍ଗେଇବି

ଯେ ଲୋକେ ତ୍ରାହି ତ୍ରାହି ଡାକିବେ । ଘର, ଦୁଆର, ସଡ଼କ ସବୁ ସଫା ସୁତରା ହେଇଯିବ ।

ପରିମଳ ସିଂହ ହସି ପକେଇଲେ ।

— ଏମିତି କେତେ ଲୋକଙ୍କୁ ବାଡ଼େଇବେ ସେନାପତିଏ ? ଏ ପରା ଗୋଟା ମୁଲକ ! ଜଣେ ଦି'ଜଣ ହେଉଛନ୍ତି ? ପୁଣି ସେମାନେ ପରା ମଣିଷ ! ପିମ୍ପୁଡ଼ି ଉପରେ ଗୋଡ଼ ପଡ଼ିଗଲେ ସିଏ ପରା କାମୁଡ଼ି ଦଉଛି ! ଆଉ ଲୋକଙ୍କୁ ଗୋଗୋଛ ମାଡ଼ ! ସେମାନେ ଯଦି ଏକାଠି ହୁଅନ୍ତି ? ସେମାନେ ଯଦି ଠେଙ୍ଗା ଉଠାନ୍ତି ! ଆମେ ତ ବେଙ୍ଗା ହେଇଯିବା ! ଇଏ କ'ଣ ରାଜାର ଧର୍ମ ।

ରଜା ଏଭଳି କହିବାରୁ ସେନାପତି ତ ବସିଗଲେ । ତାଙ୍କ ମୁହଁରୁ ପାଣି ମରିଗଲା । ମନ୍ତ୍ରୀ ଆଉ ପାରିଷଦମାନଙ୍କ ବୁଦ୍ଧି ବଣା ।

ସଭିଏଁ ଚୁପ୍‌ଚାପ୍ ।

ରଜା ଏଥର କବିଙ୍କ ଆଡ଼କୁ ଚାହିଁଲେ । ''ବିମଳ ମହାବ୍ୟାସ, ରାଜ କବି ମହାଶୟ, ଆପଣ କିଛି କହୁନାହାଁନ୍ତି ଯେ !''

- ଉପାୟ ଅଛି ଆଜ୍ଞା ! ମୁଁ ଆପଣଙ୍କୁ ଇ କେବଳ ଏକାନ୍ତରେ କହିବି । ଅବଶ୍ୟ ପୁରୋହିତ ମହାଶୟ ରହିପାରନ୍ତି ।

ଦରବାର ଖାଲି ହୋଇଗଲା ।

ରହିଲେ କେବଳ ରଜା, କବି ଓ ପୁରୋହିତ । କବି ରଜାଙ୍କ ବିଚାରକୁ ସାଧୁବାଦ ଜଣେଇଲେ । ପ୍ରଜାମାନଙ୍କୁ ତଡ଼ିବେନି, ଦଣ୍ଡିବେନି, ଏହାର ଉପରକୁ ଉଠି ସେ ରାଇଜର ହିତ କରିବେ । ଏହା ପ୍ରକୃତ ଉତ୍ତମ ବିଚାର ।

ସେଇଠୁଁ କବି ତାଙ୍କ କଥା କହିଲେ ।

ରଜା କହିଲେ ! କବି ମହାଶୟ, ଆପଣ ଗୋଟେ ଓ୍ୱାଜିବ୍ କଥା କହିଛନ୍ତି । କଥା ପରି କଥାଟେ । ସୁନାର ଲୋଭ କାହାର ନାଇଁ ! ମଣିଷ ସ୍ୱଭାବରେ ଲୋଭୀ । ପୁଣି ସୁନା ! ରାମଚନ୍ଦ୍ର ପରା ସୁନା ହରିଣ ପଛରେ ଧାଇଁଥିଲେ ! ଆମର

ବହୁତ ସୁନା ଅଛି । ଆଉ ସେ ସବୁ ତ ଲୋକଙ୍କର । କିଛି ପାଇବା ଲାଗି କିଛି ହରେଇବାକୁ ପଡ଼େ । ନା କ'ଣ କହୁଛନ୍ତି ପୁରୋହିତ ?

– ସତ କଥା । ତା' ଛଡ଼ା ଲୋକେ ଧର୍ମ ଉପରେ ଖୁବ୍ ବିଶ୍ୱାସ କରନ୍ତି । କବିଙ୍କ ପ୍ରସ୍ତାବରେ ଲୋକଙ୍କ ଏ ଦୁଇଟି କଥା ଉପରେ ଜୋର୍ ଦିଆଯାଇଛି । ତେଣୁ କବିଙ୍କ କଥା ଅନୁସାରେ ଶୀଘ୍ର କାମ ହଉ ।

ସେମାନଙ୍କ ଆଲୋଚନା ସରିଗଲା ।

ପରବର୍ତ୍ତୀ ଅମାବାସ୍ୟା । ସେଦିନ ସକାଳୁ ସକାଳୁ ରାଇଜ ଗୋଟାରେ ଧେଣ୍ଡୁରା ଗାଇଲା- ଶୁଣ....ଶୁଣ । ପରିମଳପୁରର ପିଲା, ବୁଢ଼ା, ଯୁବକ, ଯୁବତୀ ସବୁ ଜନ । ଆମର ଦେବୀ ମା' ବିମଳେଶ୍ୱରୀ ଦେଇଛନ୍ତି ସପନ । ପୁରୋହିତ ପଠେଇଛନ୍ତି ବିମଳେଶ୍ୱରୀଙ୍କ ଆଜ୍ଞା ରାଣ । ନାଳମାଳ ଅଳିଆ ଅସ୍କରା ସଫା କରି କର ପରିଚ୍ଛନ୍ନ । ପାଇବ ଖଣ୍ଡ ଖଣ୍ଡ ସୁବର୍ଣ୍ଣ । ନହେଲେ ଆସିବ ମରଣ ।

ଏକଥାଟା ସାହି, ଗଳି, କନ୍ଦି, ସହର, ବଜାର ସବୁଠି ବାଜିଲା । ନଈ କୂଳରେ, ପୋଖରୀ ଘାଟରେ, ପାହାଡ଼ ତଳେ, କିଆରି ମାଳରେ ଶୁଭିଲା । ପିଲାଠୁ ବୁଢ଼ା । ସଭିଏଁ ଶୁଣିଲେ । ତାଜୁବ୍ ହେଲେ । ଦେବୀର ଆଜ୍ଞା । ପାଳିବାକୁ ହବ । ପାଳିଲେ ମିଳିବ ସୁବର୍ଣ୍ଣ । ନ ପାଳିଲେ ମରଣ । ପାଳିବାନି କିଆଁ ।

ଧାଇଁଲେ ସଭିଏଁ । ନାଳ ସଫା କଲେ । ଅଳିଆ ଅସ୍କରା ସଫା ହେଲା । ସେଗୁଡ଼ାକୁ ପୋଡ଼ାଗଲା । କୋଉଠି ଗାତ ଖୋଳି ପୋତାଗଲା ।

ଆଉ ଦେଖ ! ଯେ କହୁଛି ସୁନା କାଠିଟେ ପାଇଲି । ସେ କହୁଛି ପାଇଲା । ଏଣେ ରଜା ଘର ଲୋକ ଚାରିଆଡ଼େ ବଢ଼େଇ କୁଢ଼େଇ ଏସବୁ କହି ବୁଲିଲେ । ଅମୁକ ଗାଁର ଅମୁକ ଲୋକ ସୁନା କାଠି ପାଇଛି । ସତେ ଯେମିତି ହଜାର ହଜାର ଲୋକ ସୁନାକାଠି ପାଉଛନ୍ତି । ଜଙ୍ଗଲରେ ନିଆଁ ଲାଗିଗଲା । ଲୋକଙ୍କ ମନରେ ଖାଲି ସୁନା ଲୋଭର ନିଆଁ ! ସେମାନେ ଏକ ରକମ ପାଗଳ ! ସୁନା ମିଳିଲେ; ଏକାବେଳେ ପାଟି କଲେ - ସୁନାରେ ସୁନା ! ଜୟ ମା' ବିମଳେଶ୍ୱରୀ !!

ସବୁ ନାଳ, ନର୍ଦ୍ଦମା, ରାସ୍ତା, ଘାଟ ସଫା । କୋଉଠି ବି ମଇଳା ଟିକେ ରହିଲାନି । ନିଠେଇ ନିଠେଇ ସଫା କଲେ ଲୋକେ । କାଳେ ସୁନା ମିଳିବ । ମା' ବିମଳେଶ୍ୱରୀ ସନ୍ତୁଷ୍ଟ ହେବେ ।

ଘରେ ଘରେ, ଗାଁରେ ଗାଁରେ ପ୍ରତିଯୋଗିତା ଲାଗିଗଲା । ଯେ ଗାଁ ସେ ଗାଁକୁ ବଳିଲା । ସେ ଗାଁ ମାତି ଉଠିଲା । ମାଛି, ମଶା, ମୂଷା ହେଲେ ନିର୍ବଂଶ । ଏମିତି ସଫା ରହିବା ମନଟି କିଛିଦିନ ପରେ ଅଭ୍ୟାସ ହେଇଗଲା । ସଫା ରହିବାର ମଜା ଥରେ ପାଇଗଲେ ତ ତେଣିକି ସବୁବେଳେ ସଫାସୁତୁରା ରହିଲେ ।

ମୁଁ ଥରେ ସେ ରଜାଙ୍କୁ ଭେଟିବାକୁ ଗଲି । ଆଗରୁ ସେଠାର ଅବସ୍ଥା ଜାଣିଥିଲି । ଏଥର ଅବସ୍ଥା ଦେଖି ରଜାଙ୍କୁ ପଚାରିଲି - ଇଏତ ଚମତ୍କାର ! କୁହୁକ ! ହେଲା କେମିତି !!

ରଜା କହିଲେ - ଏସବୁ କବିଙ୍କ କରାମତି ।

ତା'ପରେ ସେ ଗୋପନ ରହସ୍ୟଟି କହିଲେ । କବିଙ୍କ ପ୍ରସ୍ତାବ । ରଜାଙ୍କ ଭଣ୍ଡାରର ସୁନାକୁ ଛୋଟ ଛୋଟ କାଠିରେ ପରିଣତ କରାଗଲା । ଗୁପ୍ତଚର ସେ କାଠି ନେଇ ପ୍ରତି ସାହି ଗାଁରେ ଲୁଚେଇଲେ- ଆବର୍ଜନା ତଳେ । ନାଳ ଭିତରେ । ହଜିଗଲେ ଲୋକଙ୍କର ଯିବ । ପାଇଲେ ଲୋକେ ପାଇବେ । ସିଏତ ରଜାଙ୍କ ନିଜର ଧନ ନୁହେଁ ପ୍ରଜାଙ୍କର । ଦେବୀଙ୍କ ଆଜ୍ଞା ! କୁହକୁ ପରି କାମ କଲା । ଧର୍ମ ପାଗଳ ଲୋକ । ଟିକେ ମିଛ ହେଲା, ହେଲେ ଲୋକଙ୍କ ଉପକାର ଲାଗି ଏତେ ସାମାନ୍ୟ ମିଛ ।

ଏବେ ପରିମଳପୁର ସତକୁସତ ତାହା ପରିମଳପୁର !! ■

**ସଭାପତି, ଶିଶୁ ସାହିତ୍ୟ ଲେଖକ ସମ୍ମେଳନ, ସାମନ୍ତ ସାହି, କଟକ-୭୫୩୦୦୧**

# ଧନର ଉଚିତ ବ୍ୟବହାର

● ପ୍ରଶାନ୍ତ କୁମାର ପଣ୍ଡା

ଜଣେ ଥିଲେ ରାଜା । ଥରେ ଗୋଟାଏ କଥା ମୁଣ୍ଡକୁ ଢୁକିଗଲେ ସେଇ କାମ କରିବସନ୍ତି, ନହେଲେ କେହି ଶାନ୍ତିରେ ରହିପାରିବେନି । ଦିନେ



ସେ ଭାବିଲେ, ‘‘ମୋ ରାଜ୍ୟର ଅବସ୍ଥା ଏମିତି ହେଇଚି କାହିଁକି ? କିଛି ଲୋକ ଧନୀ ଆଉ କିଛି ଗରିବ । ବୋଧହୁଏ ମୋ ରାଜ୍ୟ ସେତେ ସମୃଦ୍ଧ ନୁହେଁ । ସଭିଙ୍କ ପାଖରେ ଯଦି ସମାନ ଧନ ହେଇଯିବ ତେବେ ମୋ ରାଜ୍ୟ ସମୃଦ୍ଧ ହେଇଯିବ । ଗରିବ ଲୋକମାନେ ଧନୀ ହେଇଯିବେ । ଆଉ କେହି ରାଜ୍ୟରେ ଗରିବ ରହିବେନି ।’’

ପରଦିନ ରାଜା ଆଦେଶ ଦେଲେ ରାଜ୍ୟରେ ଯେତେ ଧନୀ ଲୋକ ଅଛନ୍ତି ସେମାନଙ୍କ ଠାରୁ ଧନ ଛଡ଼େଇ ଆଣି ଗରିବଙ୍କ ଭିତରେ ବାଣ୍ଟିଦିଅ । ରାଜକର୍ମଚାରୀମାନେ ଲାଗିପଡ଼ିଲେ । ଧନୀ ଲୋକଙ୍କ ଠାରୁ ଧନ ଛଡ଼େଇ ଆଣି ଗରିବ ଲୋକଙ୍କୁ ବାଣ୍ଟିବାକୁ ଲାଗିଲେ । ପ୍ରତିଦିନ ସଂଜବେଳେ ରାଜାଙ୍କୁ ତା’ର ହିସାବ ଦିଅନ୍ତି ।

କିଛିଦିନ ବିତିଗଲା । ରାଜ୍ୟ ଅବସ୍ଥା ଭଲ ହେବ କ’ଣ ଆହୁରି ଖରାପ ହେବାକୁ ଲାଗିଲା । ରାଜା ପୁଣି ଚିନ୍ତିତ ହୋଇପଡ଼ିଲେ । ରାଜସ୍ୱ ଆଉ ଅଧିକ ଆସିଲାନି ।

ପ୍ରଧାନମନ୍ତ୍ରୀ କହିଲେ, ‘‘ମହାରାଜ ! ଧନୀ ଲୋକଙ୍କ ଠାରୁ ଧନ ଛଡ଼େଇ ଅଣାଗଲା । ସେମାନେ ଭାବିଲେ ଧନ ଯଦି ଆମ ପାଖରେ ନ ରହିବ, ତେବେ ଆଉ ରୋଜଗାର କରିବା କାହିଁକି ? ସେମାନେ କେବଳ ଗୁଜୁରାଣ ମେଣ୍ଟାଇବା ପାଇଁ ରୋଜଗାର କଲେ । ତେଣେ ଗରିବ ଲୋକମାନେ ବିନା ପରିଶ୍ରମରେ ଧନ ପାଇଗଲେ । ସେମାନେ ଭାବିଲେ ବୃଥା ପରିଶ୍ରମ କରି ବିଲବାଡ଼ିରେ ଖଟିବେ କାହିଁକି ? ଗରିବ ରହିଲେ ଧନ ତ ସେମିତି ମିଳୁଚି । ସେମାନେ ପାଲଟିଗଲେ ଅଳସୁଆ । ରାଜ୍ୟରେ ଚାଷ ଠିକ୍ ଭାବେ ହେଲାନି । ଖାଦ୍ୟ ଉତ୍ପାଦନ କମିଲା । ବ୍ୟବସାୟ ଧୀରେ ଧୀରେ କମିଲା । ଦାରିଦ୍ର୍ୟ ଯେମିତି ବଢ଼ିଲା ବେକାର ସମସ୍ୟା ବଢ଼ିଲା । ଏଣୁ ରାଜ୍ୟର ସମୃଦ୍ଧି ହେବ କେମିତି ?’’

ରାଜା ଶୁଣିଲେ ସବୁ । ଚିନ୍ତାକଲେ ମନ୍ତ୍ରୀ ଠିକ୍ କଥା କହୁଚନ୍ତି । ଏ ସମସ୍ୟା ସମାଧାନ ପାଇଁ ମନ୍ତ୍ରୀଙ୍କୁ ପଚାରିଲେ ।

ମନ୍ତ୍ରୀ କହିଲେ, ''ମହାରାଜ, ଆପଣ ଧନୀ ଲୋକଙ୍କ ଠାରୁ 'କର' ଆଦାୟ କରନ୍ତୁ । ସେମାନେ ଯାହା ରୋଜଗାର କରିବେ ସେଥିରୁ କିଛି ଅର୍ଥ ରାଜକୋଷକୁ କର ଆକାରରେ ଦେବେ । ଏଇ ଯେଉଁ ଧନ ରାଜକୋଷକୁ ଆସିବ, ତାକୁ ଆପଣ ବାଣ୍ଟିଦେବେନି । ସେଥିରେ କିଛି ଲୋକହିତକର କାର୍ଯ୍ୟ କରିବେ । ଏଇ ଯେମିତି ଚାଷ କାମ ପାଇଁ ଜଳସେଚନର ସୁବିଧା, ବଜାର ଦର ସ୍ଥିର ରଖିବା, ବିଭିନ୍ନ କୁଟୀର ଶିଳ୍ପ ବସାଇବା ଏସବୁ କାମ କରାନ୍ତୁ । ଦେଖିବେ ଉତ୍ପାଦନ ପୁଣି ବଢ଼ିବ । ବେକାରମାନେ ରୋଜଗାର କରିପାରିବେ । ଗରିବ ଲୋକମାନେ ପେଟପୂରା ଖାଇବାକୁ ପାଇପାରିବେ । ସମସ୍ତେ ପରିଶ୍ରମ କରିବେ । ଆମ ରାଜ୍ୟ ପୁଣି ସମୃଦ୍ଧ ହେଇଯିବ । ଧନର ଉଚିତ ବ୍ୟବହାର କରିଜାଣିଲେ ଉନ୍ନତି ହେବ ।''

ମନ୍ତ୍ରୀ କଥା ରାଜା ଶୁଣିଲେ । ମନକୁ ପାଇଲା । ଖୁସି ହେଇଗଲେ । ସଙ୍ଗେ ସଙ୍ଗେ ରାଜକର୍ମଚାରୀମାନଙ୍କୁ ଆଦେଶ ଦେଲେ, ଆଉ କାହାରିଠାରୁ ଧନ ଛଡ଼େଇବେ ନାହିଁକି ଗରିବଙ୍କ ଭିତରେ ବାଣ୍ଟିବେ ନାହିଁ ।

ତାହାହିଁ ହେଲା । ରାଜ୍ୟରେ ଲୋକହିତକର କାର୍ଯ୍ୟ ସବୁ କରାଗଲା । ଲୋକମାନେ ପରିଶ୍ରମ କଲେ । ରାଜ୍ୟଟି ପୁଣି ସମୃଦ୍ଧ ହେଲା । ■

ଶିକ୍ଷକ, ନିମପୁର ମଧ୍ୟ ଇଂରାଜୀ ବିଦ୍ୟାଳୟ, ଜଗତପୁର, କଟକ

# ଗୁରୁ ଓ ଶିଷ୍ୟ

● ରାଜକୃଷ୍ଣ ମହାନ୍ତି

ଅନେକ ଦିନ ତଳର କଥା । ସେତେବେଳେ ଶିଷ୍ୟମାନେ ବଣରେ ଋଷି ଆଶ୍ରମରେ ରହି ବିଭିନ୍ନ ପ୍ରକାର ବିଦ୍ୟା ଶିକ୍ଷା କରୁଥିଲେ । ଥରେ ଦୁଇଜଣ ଶିଷ୍ୟ ଜଣେ ଋଷିଙ୍କ ଆଶ୍ରମରେ ବିଦ୍ୟାଶିକ୍ଷା ଶେଷକରି ଗୁରୁଙ୍କ ନିକଟରୁ ବିଦାୟ ନେବା ପାଇଁ ତାଙ୍କୁ ଅନୁମତି ମାଗିଲେ । ଗୁରୁ ସେମାନଙ୍କୁ ବିଦାୟ ଦେବା ପୂର୍ବରୁ ଦକ୍ଷିଣା ମାଗିଲେ ।

ସେ ପ୍ରଥମ ଶିଷ୍ୟକୁ କହିଲେ ,''ମୋତେ ଭାରି ଭୋକ କରୁଛି । ମାଂସ ଖାଇବାକୁ ମୋର ଇଚ୍ଛା ହେଉଛି, ଏଣୁ ତୁମେ ଗୋଟିଏ ଜୀବ ମାରିଆଣିବ । ତାକୁ ମାରିବାବେଳେ ଯେପରି କେହି ତୁମକୁ କିମ୍ବା ସେ ଜନ୍ତୁକୁ ଦେଖି ପାରିବେ ନାହିଁ । କେହି ମଧ୍ୟ ସେ କଥା ଶୁଣିପାରିବେ ନାହିଁ । ତୁମେ ମୋ ପାଇଁ ଗୋଟିଏ ଅଲୋଡ଼ା ପଦାର୍ଥ ଆଣିବ ବୋଲି ଅନ୍ୟ ଶିଷ୍ୟଟିକୁ କହିଲେ । ଦୁଇଜଣ ଶିଷ୍ୟ ଭିନ୍ନ ଭିନ୍ନ ଦିଗରେ ବାହାରିଲେ । ପ୍ରଥମ ଶିଷ୍ୟ ଲୋକ ଗହଳି ନଥିବା ଦେଖି ଗୋଟିଏ ଦେଉଳରେ ପଶି ପାରାଟିଏ ଧରିଲା । ତାକୁ ମାରିବା ପାଇଁ ବସିଲା, କିନ୍ତୁ ଭାବିଲା, ମୁଁ କିପରି ମାରିବି ? ଅଷ୍ଟଦିଗପାଳ, ସୂର୍ଯ୍ୟ, ଚନ୍ଦ୍ର, ଅଗ୍ନି, ବାୟୁ ଏବଂ ସର୍ବବ୍ୟାପୀ ନାରାୟଣ ତ ମୋତେ ଆଉ ପାରାକୁ ଦେଖୁଅଛନ୍ତି । ମୁଁ



ମଧ୍ୟ ନିଜେ ତାକୁ ଦେଖୁଛି, ସେ ମଧ୍ୟ ମୋତେ ଦେଖୁଛି । ଏପରି ଅବସ୍ଥାରେ ମୁଁ ତାକୁ ମାରିବି କିପରି? ଏହାଭାବି ସେ ପାରାଟିକୁ ଧରି ଗୁରୁଙ୍କ ପାଖକୁ ଗଲା ।

ଏଣେ ଅନ୍ୟ ଶିଷ୍ୟଟି ବୁଲିବୁଲି ଅନେକ ପଦାର୍ଥ ଦେଖିଲା, କିନ୍ତୁ ସେଗୁଡ଼ିକ ମଧ୍ୟରେ ଦରକାର ନ ହେବା ପଦାର୍ଥ କିଛି ପାଇଲା ନାହିଁ । ଶେଷରେ ବିଷ୍ଠା କେବଳ ଅଲୋଡ଼ା ପଦାର୍ଥ ଭାବି ତାହା ଆଣିବାକୁ ଗଲା । କିନ୍ତୁ ଦେଖିଲା ବିଷ୍ଠାରେ ପୋକ ସାଲୁସାଲୁ ହେଉଛନ୍ତି । ସେ ଜାଣିଥିଲା ଯେ ବିଷ୍ଠା ଭୂମିର ପ୍ରଧାନ ସାର । ତେବେ ଦୁନିଆରେ ଅଲୋଡ଼ା ଜିନିଷ ରହିଲା କ'ଣ ? ଶିଷ୍ୟ ହତାଶ ହୋଇ ଗୁରୁଙ୍କ ପାଖକୁ ଗଲା ।

ଗୁରୁ ଦୁଇଜଣଙ୍କୁ ଫେରିବା ଦେଖି ଆନନ୍ଦରେ ପ୍ରଥମ ଶିଷ୍ୟକୁ ପଚାରିଲେ, ''ବାବା ମାଂସ ଆଣିଲ ?'' ପ୍ରଥମ ଶିଷ୍ୟ କହିଲା, ''ପ୍ରଭୋ କ୍ଷମା କରିବେ, ମୁଁ କେଉଁଠାରେ ଜୀବବଧ କରିବା ପାଇଁ ସ୍ଥାନ ପାଇଲି ନାହିଁ । ଯେଉଁଠାକୁ ଯାଏ ସେଠାରେ ଭଗବାନ, ସୂର୍ଯ୍ୟ, ଚନ୍ଦ୍ର, ଅଷ୍ଟଦିଗପାଳ ନିଶ୍ଚେ ମୋତେ ଦେଖୁଛନ୍ତି– ଏଣୁ ପକ୍ଷୀଟିଏ ଧରି ଆଣିଛି ।'' ଗୁରୁ ସନ୍ତୁଷ୍ଟ ହୋଇ କହିଲେ, ''ସୁଖର କଥା, ତୁମେ ଭଗବାନଙ୍କୁ ଚିହ୍ନି ପାରିଛ । ତାଙ୍କର ସୃଷ୍ଟି ଜୀବକୁ ନଷ୍ଟ ନ କରି ରକ୍ଷା କରିବାର ଶିଖିଛ । ତୁମର ଏହି ଅମୂଲ୍ୟ ଶିକ୍ଷା ହିଁ ମୋର ଦକ୍ଷିଣା, ଏବେ ତୁମେ ଆନନ୍ଦରେ ଗୃହକୁ ଫେରିଯାଅ ।''

ଅନ୍ୟ ଶିଷ୍ୟକୁ ପଚାରିଲେ, ''ବତ୍ସ କି ଅଲୋଡ଼ା ପଦାର୍ଥ ଆଣିଛ ?'' ସେ କହିଲେ, ''ପ୍ରଭୋ, ମୁଁ ଅନେକ ସ୍ଥାନ ବୁଲି ଦେଖିଲି ଅଲୋଡ଼ା ପଦାର୍ଥ ହୋଇ ଜଗତରେ କିଛି ନାହିଁ ।'' ଗୁରୁ ଆନନ୍ଦରେ କହିଲେ, ''ତୁମର ବୁଝିବାର ଶକ୍ତି ଅଛି, ଯେ ଈଶ୍ୱର ସୃଷ୍ଟ ପ୍ରତ୍ୟେକ ପଦାର୍ଥ ଯେକୌଣସି କାମରେ ଆସେ । ଅଲୋଡ଼ା ହୋଇ ପଦାର୍ଥ କିଛି ନାହିଁ । କୌଣସି ବସ୍ତୁ ତୁଚ୍ଛ ବା ହୀନ ନୁହେଁ । ଆନନ୍ଦର ବିଷୟ ତୁମେ ଏ ମହାମୂଲ୍ୟ ଶିକ୍ଷା ଲାଭ କରିଅଛ । ତେଣୁ ତୁମେ ଏବେ ନିଜ ଗୃହକୁ ଫେରିଯାଅ ।'' ଉଭୟେ ଗୁରୁଙ୍କୁ ପ୍ରଣାମ କରି ଆନନ୍ଦରେ ନିଜନିଜ ଘରକୁ ଫେରିଲେ ।

ସର୍ବ ଘଟରେ ନାରାୟଣ      କରନ୍ତି ଲୋକର କଲ୍ୟାଣ । ■

ପ୍ଲଟ୍ ନଂ-୩୫୭, ସି.ଡି.ଏ., ସେକ୍ଟର-୯, କଟକ

# ବିପଦେ ନ ଯାଅ ଡ଼ରି

● ପ୍ରେମାନନ୍ଦ ସେଠୀ

**ଗାଁ** ମୁଣ୍ଡରେ ଝଙ୍କାଳିଆ ଆମ୍ବ ଗଛଟିଏ । ସେହି ଗଛରେ କୁଆଟିଏ ବସାକରି ରହିଥାଏ । ତା'ର ଦୁଇଟି ଛୁଆ । ମାଆ କୁଆ ଛୁଆ ଦୁଇଟିକୁ ଖୁବ୍ ଭଲ ପାଏ, ବଡ଼ ଆଦରରେ ପାଳେ । ଛୁଆଙ୍କୁ ଛାଡ଼ି କେବେ ଦୂରକୁ ଯାଏ ନାହିଁ । ଆଖ ପାଖରୁ ଖାଦ୍ୟ ଆଣି ଛୁଆମାନଙ୍କୁ ଦିଏ । ଛୁଆମାନଙ୍କ ଉପରେ ସବୁବେଳେ ନଜର ରଖିଥାଏ ।

ଦିନକର ଘଟଣା, ଖରାଦିନ ହୋଇଥାଏ । ପାଖରେ ଥିବା ନଈ, ନାଳ ଓ ଗାଡ଼ିଆର ପାଣି ଶୁଖିଯାଇଥାଏ । ପାଖରେ କୁଜି ଗେଣ୍ଡାଟିଏ ବି ମିଳିଲା ନାହିଁ । ତେଣୁ ମାଆ କୁଆ ସେ ଦିନ ଆହାର ଖୋଜିବାକୁ ବହୁ ଦୂରକୁ ଚାଲିଗଲା ।

ମାଆର ଫେରନ୍ତା ପଥକୁ ଛୁଆ ଦୁଇଟି ଚାତକ ପରି ଚାହିଁ ବସି ଥାଆନ୍ତି । ମାଆ ଫେରୁ ନଥାଏ । ସକାଳ ଗଡ଼ି ଦ୍ୱିପ୍ରହର ହେଲା । ଦ୍ୱିପ୍ରହର ଯାଇ ବେଳ ବୁଡ଼ିବାକୁ ବସିଲା । ମାଆର ଦେଖାନାହିଁ । ମାଆର ଫେରିବା ଯେତିକି ଡ଼େରି ହେଉଥାଏ, ଛୁଆମାନଙ୍କର ବ୍ୟାକୁଳତା ସେତିକି ବଢ଼ି ଚାଲିଥାଏ । ସକାଳୁ ପେଟରେ ପାଣି ଟୋପାଏ ବି ପଡ଼ିନାହିଁ । ଭୋକରେ ପେଟ ଜଳି ଯାଉଥାଏ । ଭୋକ ସମ୍ଭାଳି ନ ପାରି ଛୁଆ ଦୁଇଟି ବିକଳରେ ରଡ଼ି ଛାଡୁଥାନ୍ତି ।



କିଛି ସମୟ ପରେ ମାଆ କୁଆ ଆହାର ଧରି ପହଁଞ୍ଚିଲା । ଯାହା ଦେଖିଲା ନିଜ ଆଖିକୁ ବିଶ୍ୱାସ କରିପାରିଲା ନାହିଁ । କ'ଣ କରିବ କିଛି ଭାବି ପାରିଲା ନାହିଁ । ଛୁଆଙ୍କ ପାଖକୁ ଯିବା ପାଇଁ ତା'ର ସାହସ ହେଲା ନାହିଁ । ଥକ୍‌କିନା ବସିଗଲା । ଦେଖିଲା ଦଳେ ଗାଈଆଳ ପିଲା ସେହି ଗଛ ଡାଳରେ ଝୁଲୁଥିବା ଗୋଟିଏ ହଳଦିଆ ଟକ୍ ଟକ୍ ପାଚିଲା ଆମ୍ବକୁ ପାରିବା ପାଇଁ ଢ଼େଲା ଫିଙ୍ଗୁଛନ୍ତି । ହେଲେ ଆମ୍ବଟି ପଡୁନାହିଁ । ଢ଼େଲାଗୁଡ଼ିକ ଯାଇ କୁଆ ବସାରେ ବାଜୁଛି । ବସାଟି ସମ୍ପୂର୍ଣ୍ଣ ଭାଙ୍ଗି ଗଲାଣି । ଛୁଆ ଦୁଇଟି କ୍ଷତ ବିକ୍ଷତ ହୋଇ ରକ୍ତାକ୍ତ ହୋଇ ଗଲେଣି । କେଉଁ ଆଡ଼େ ଯାଇ ନ ପାରି ଜୀବନ ବିକଳରେ ଚିତ୍କାର କରୁଛନ୍ତି ।

ମାଆ କୁଆର ମଥା ଘୁରିଗଲା । କରିବ କ'ଣ ? ଛୁଆଙ୍କ ପାଖକୁ ଗଲେ ଢ଼େଲା ମାଡ଼ଖାଇ ନିଜେ ମରିବ । ନ ଗଲେ ଛୁଆମାନେ ମରିବେ । ତା'କୁ କିଛି ଉପାୟ ଦେଖାଗଲା ନାହିଁ । ତଥାପି ଡ଼ରି ନ ଯାଇ ମନରେ ସାହସ ବାନ୍ଧି ମୁଣ୍ଡକୁ ଉପରକୁ ଟେକି କିଛି ଚିନ୍ତା କଲା । ତା' ପରେ ପାଖ ଗଛକୁ ଉଡ଼ିଗଲା । ଥଣ୍ଟରେ ଧରିଥିବା ଆହାରକୁ ସେହି ଗଛ କୋରଡ଼ରେ ଲୁଚାଇ ଦେଇ ପୁଣି ଫେରି ଆସିଲା । ଛୁଆଙ୍କ ମୁହଁକୁ ଟିକେ ଚାହିଁଲା । ଦେଖିଲା - ଛୁଆମାନେ କେଡ଼େ ବିକଳରେ ତା' ଆଡ଼କୁ ଚାହିଁ ରଡ଼ି କରୁଛନ୍ତି । ଭୋକର ଜ୍ୱାଳାଠାରୁ ଢ଼େଲାମାଡ଼ ବେଳକୁ ବେଳ ବଢ଼ିଚାଲିଛି । ମାଆ କୁଆ ଆଉ ସମ୍ଭାଳି ପାରିଲା ନାହିଁ । ସାହସର ସହିତ ସେହି ପାଚିଲା ଆମ୍ବ ଆଡ଼କୁ ମୁହାଁଇଲା । ସେ ଏତେ ଦିନ ଏ ଗଛରେ ବସା କରିଥିଲେ ବି କେବେ ଏମିତି ଆମ୍ବ ଦେଖି ନଥିଲା । ସେତ ଜାଣିଥିଲା ଗଛରୁ ସବୁ ଆମ୍ବ ସରିଗଲାଣି । ଯଦିବା ଜାଣି ଥାନ୍ତା ତେବେ ଆହାର ପାଇଁ ଏତେ ଦୂରକୁ ଯାଇଥାନ୍ତା କାହିଁକି ? ଛୁଆମାନଙ୍କର



ଏ ଅବସ୍ଥା ବା ହୋଇଥାନ୍ତା କାହିଁକି ? ଏକଥା ଚିନ୍ତାକରି ଆମ୍ବ ପାଖକୁ ଧୀରେ ଧୀରେ ଚାଲିଲା । ଆମ୍ବ ପାଖକୁ କୁଆ ଯିବାର ଦେଖି ପିଲାମାନେ ଆହୁରି ଯୋର୍‌ରେ ଢ଼େଲା ଫିଙ୍ଗିବାକୁ ଲାଗିଲେ । ହେଲେ କୁଆ ତା'କୁ ଭ୍ରୂକ୍ଷେପ ନ କରି ଆମ୍ବ ପାଖରେ ପହଁଞ୍ଚିଲା । ଆମ୍ବଟିକୁ ଥଣ୍ଟରେ ଛିଣ୍ଡେଇ ତଳକୁ ପାକାଇ ଦେଲା । ଆମ୍ବଟି ତଳେ ପଡ଼ିଯିବାରୁ ପିଲାମାନେ ଖୁସିରେ ଆମ୍ବଟିକୁ ଗୋଟେଇ ନେଲେ । ଢ଼େଲା ଫିଙ୍ଗିବା ବନ୍ଦ କରି ସେଠାରୁ ଚାଲିଗଲେ ।

ଏଥର ମାଆ କୁଆ ଆର ଗଛରେ ରଖିଥିବା ଖାଦ୍ୟକୁ ଧରି ଛୁଆଙ୍କ ପାଖରେ ପହଁଞ୍ଚିଲା । ଛୁଆମାନେ ମାଆକୁ ଦେଖି ବିକଳରେ ମାଆ ପେଟ ତଳେ ପସିଗଲେ । ମାଆ ମଧ୍ୟ ଛୁଆମାନଙ୍କୁ ଆଦରରେ ପେଟତଳେ ପୁରାଇ ଦୁଇ ଡେଣାରେ ଢାକି ଧରିଲା । ଛୁଆମାନେ ବରଡା ପତର ପରି ଥରୁ ଥାଆନ୍ତି । ମାଆ କିଛି ଆଶ୍ୱାସନା ଦେଇ ତାଙ୍କୁ ଖାଇବାକୁ ଦେଲା । କିନ୍ତୁ ଛୁଆମାନେ ସେଇମିତି ଭୟରେ ଥରୁଥାନ୍ତି । କିଛି ଖାଉ ନଥାନ୍ତି । ପୁଣି ମାଆ ବୁଝାଇବାକୁ ଯାଇ କହିଲା– ତୁମେମାନେ ଏତେ ଛାନିଆଁ ହେଉଛ କାହିଁକି ? ତୁମେ ଆଜି ଛୋଟ ଅଛ । କାଲିକୁ ବଡ଼ ହେବ, ଦୁନିଆରେ ବଞ୍ଚିବାକୁ ହେଲେ ଏମିତି ଅନେକ ବିପଦ ଆସିବ । ବିପଦ ବେଳେ ଡରିଗଲେ କ'ଣ ଚଳିବ । ବରଂ ବୁଦ୍ଧି ଖଟାଇ ସାହସର ସହିତ ତା'କୁ ମୁକାବିଲା କରିବାକୁ ପଡ଼ିବ । ଆମେ ସିନା ଦେଖିବାକୁ ଛୋଟ । ବଳରେ କାହାକୁ ପାରିବା ନାହିଁ, ହେଲେ ବୁଦ୍ଧି ବଳରେ ବିପଦରୁ ତ ମୁକୁଳି ପାରିବା । ତେଣୁ ବିପଦ ବେଳେ ଡ଼ରି ନ ଯାଇ ତା'ର ଉପାୟ ଚିନ୍ତାକରି ତା'କୁ ସାମ୍ନା କରିବା ଉଚିତ୍ ।

ଛୁଆମାନେ ମାଆର କଥାକୁ ଠିକ୍ ବୁଝିପାରିଲେ । ଖୁସିରେ ଖାଦ୍ୟ ଖାଇ ମାଆ କୋଳରେ ଆରାମରେ ଶୋଇ ଗଲେ । ■

ଶଙ୍ଖାମେରୀ, ବଡୟା, କଟକ

# ଅତିରୁ ଇତି

• ଦୟାନିଧି ବେହେରା

**ପୋ**ଖରୀ କୂଳର ଥିବା ସାରୁବୁଦା ମୂଳରେ ବେଙ୍ଗମାନେ ରହୁଥିଲେ । ସେମାନଙ୍କ ଭିତରେ ଯୁବକ ବେଙ୍ଗଟାଏ ଥାଏ । ସେଇଟି ଥିଲା ଅଳସୁଆ ଓ ଗର୍ବୀ । ସେ କାହାରିକୁ ଖାତିର କରୁ ନଥିଲା । ତା' ମନ ଯାହା କହୁଥିଲା ସେ ତାହା ହିଁ କରୁଥିଲା । ଦିନସାରା ସେ ଖାଇପିଇ ମନ ଆନନ୍ଦରେ ଗୀତ ବୋଲୁଥିଲା ।



ରୋଗିଣା ବୁଢ଼ା ବେଙ୍ଗଟିଏ ଥିଲା । ସେ ଯୁବକ ବେଙ୍ଗଟିକୁ ସେପରି ନ କରିବାକୁ କହିଲା । ଯୁବକ ବେଙ୍ଗଟି ଖପ୍‌ପା ହୋଇ ତାକୁ ଗାଳିଦେଲା ଓ ନିମିଷକରେ ସେ ସ୍ଥାନ ଛାଡ଼ି ଯିବା ପାଇଁ କହିଲା । ବୟସ୍କ ବେଙ୍ଗ ସହିତ ଅନ୍ୟମାନେ ଯୁବକ ବେଙ୍ଗର ଏ ମନ୍ଦ ଆଚରଣ ଦେଖି ବିପଦର ଆଶଙ୍କା କରି ସେ ସ୍ଥାନ ଛାଡି ପଳାଇଗଲେ । ତଥାପି ସେଇ ଉଦ୍ଧତ ବେଙ୍ଗଟି ତା'ର ଅଭ୍ୟାସ ଛାଡ଼ିଲା ନାହିଁ ।

ସେଇ ବାଟ ଦେଇ ଯାଉଥିଲା ଏଣ୍ଡୁଅଟାଏ । ସେ ବିରକ୍ତ ହୋଇ ସେଇ ବେଙ୍ଗକୁ ଗାଳି ଦେଇ କହିଲା, ହଇରେ ବେଙ୍ଗ, ତୋ'ର ଏଇ ଦର୍ପ ବେଶି ଦିନ ରହିବ ନାହିଁ । ବେଙ୍ଗଟି ଏଣ୍ଡୁଅ କଥାରେ ହସି ଦେଲା । ଏଣ୍ଡୁଅକୁ କହିଲା, ଯିଏ ଦୁର୍ବଳ ସେ ଏହିପରି କହିଥାଏ । ମୁଁ ତୋ'ଠୁ ବଳବାନ । ତେଣୁ ତୋ'ର ଏ ସ୍ଥାନ ଛାଡ଼ି ଚାଲିଯିବା ଉଚିତ୍ ।

ବେଙ୍ଗର ରଡ଼ିରେ ଗାତୁଆ ମୂଷାଟି ରହି ପାରିଲା ନାହିଁ । ସେ ବେଙ୍ଗଟିକୁ ଏପରି ରଡ଼ି ନ କରିବାକୁ ଅନୁରୋଧ କଲା । ବେଙ୍ଗଟି କିନ୍ତୁ ତା' ଆଚରଣରେ କିଛି ପରିବର୍ତ୍ତନ ଆଣିଲା ନାହିଁ । ସେ ଖାଲି କେଁ କଟର ରଡ଼ି ଛାଡୁଥିଲା । ଏପରପି ଉଦ୍ଧତ ବେଙ୍ଗକୁ କ'ଣ କରାଯାଇ ପାରେ ?

ଏତିକିବେଳେ ଝିପିରି ଝିପିରି ବର୍ଷା ହେଲା । ଆକାଶରେ ଭସାବାଦଲ ସାଙ୍ଗରେ ସୂର୍ଯ୍ୟଙ୍କର ଲୁଚକାଳି ଖେଳ ଚାଲିଥିଲା । ଥଣ୍ଡା ପବନ ସାଇଁ ସାଇଁ ବହୁଥିଲା । ବେଙ୍ଗଟି ଏଥର ଗଳା ଫଟାଇ କେଁକଟର ରଡ଼ିଛାଡ଼ିଲା ।

ଖଣ୍ଡେ ଦୂରରେ ଝରିପୋକ ଖାଉଥିଲା ଧଣ୍ଡ ସାପଟାଏ । ବେଙ୍ଗର ରଡ଼ି ଧଣ୍ଡ ସାପର କାନକୁ ମଧୁର ଶୁଭିଲା । ସେ ନିମିଷକରେ ବେଙ୍ଗ ପାଖରେ ହାଜର ହୋଇଗଲା ଓ ଗୋଟିଏ କ୍ଷେପରେ ସେଇ ଦୁଷ୍ଟ ବେଙ୍ଗକୁ କାମୁଡ଼ି ଧରିଲା । ଏତେବେଳେ ବେଙ୍ଗଟି ଆତୁରରେ ରଡ଼ି ଛାଡ଼ିଲା । ହେଲେ କେହି ତାକୁ ଉଦ୍ଧାର କରିବାକୁ ଆସିଲେ ନାହିଁ । ସେଇ ଉଦ୍ଧତ ବେଙ୍ଗର ଏଇ ରଡ଼ି ସମସ୍ତଙ୍କୁ ମଧୁର ଶୁଭୁଥିଲା । ■

**କୋଷାଧ୍ୟକ୍ଷ, କଣ୍ଟାବାଞ୍ଜି ଉପଡାକଘର, କଣ୍ଟାବାଞ୍ଜି, ବଲାଙ୍ଗୀର**

# ଭାଲୁ ମୁହଁରେ ଦିନେ

● ଡକ୍ଟର ହେମନ୍ତ କୁମାର ଦାସ

"ସେତେବେଳେ ମୁଁ କେନ୍ଦୁଝରରେ ଫରେଷ୍ଟର ଥାଏ-" ବନଅଜା କେତେବେଳ ପରେ ପାଟି ଖୋଲିଲେ । ଆମେ ବୁଝିଗଲୁ, ଏଥର କାହାଣୀ ଆରମ୍ଭ ହେବ । ଅଜା ଭଲ କାହାଣୀ କହନ୍ତି । ବନେଇ ଚୁନେଇ ଏମିତି ବାଗରେ ସେ ତାଙ୍କ କଥାଟିକୁ ଥୁଅନ୍ତି, ଶୁଣିଲା ବାଲାକୁ ଲାଗେ ସତେ ଯେମିତି ଘଟଣାସବୁ ତା' ଆଖି ଆଗରେ ଘଟିଯାଉଚି ।



ଆମର ସବୁ ସେତେବେଳେ କାହାଣୀ ଶୁଣିବାର ବୟସ । ଅଜା କୁଆଡ଼େ ଜଙ୍ଗଲ ବିଭାଗରେ ଚାକିରି କରୁଥିଲେ । କାହାଣୀ କହିବେ ମାନେ ବାଘ, ଭାଲୁ, ହାତୀ- ଏଇମାନଙ୍କ କଥା । ଆମ ଭିତରୁ ହାତୀ ଅବା କିଏ କେମିତି ଥରେ ଅଧେ ଦେଖିଥିବେ । ବାଘ ଭାଲୁ ଆଉ କିଏ ଦେଖିଚି ? ଯାହା ଚିତ୍ରରେ ଦେଖିବା କଥା । ଦି'ବନ୍ଧୁ ଜଙ୍ଗଲ ବାଟରେ ଯାଉଥିଲେ । ଜଣେ ପଚାରିଲା, ହଇରେ ସାଙ୍ଗ, ଏବେ ଯଦି ଜଙ୍ଗଲରୁ ବାଘଟାଏ କି ଭାଲୁଟାଏ ବାହାରି ପଡ଼ିବ, ତେବେ ତୁ କ'ଣ କରିବୁ ?

ଛାତି ଫୁଲେଇ ତା' ସାଙ୍ଗ କହିଲା- ମୁଁ ? ମୁଁ ସାଙ୍ଗେ ସାଙ୍ଗେ ତା' ଆଗକୁ ଚାଲିଯିବି । କହିବି... ମୋ ସାଙ୍ଗକୁ ଛାଡ଼ି ମତେ ଖା ।"

ତା'ପାଟି କଥା ପାଟିରେ ଅଛି, ଜଙ୍ଗଲ ଭିତରୁ ଭାଲୁଟାଏ ବାହାରି ପଡ଼ିଲା । ସାଙ୍ଗ ଜଣକ ଟିକିଏ ବି ଡେରି ନକରି ପାଖ ଗଛରେ ଚଢ଼ିଗଲା । ଆର ଜଣକୁ ଗଛ ଚଢ଼ିଆସେ ନାହିଁ । ସେ ଶୁଣିଥିଲା ଭାଲୁ ମଲା ମଣିଷକୁ ଛୁଏଁ ନାହିଁ । ସେ ସାଙ୍ଗେ

ସାଙ୍ଗେ ଲମ୍ବ ହୋଇ ଭୂଇଁରେ ଶୋଇପଡ଼ିଲା । ନିଃଶ୍ୱାସ ବନ୍ଦ କରିଦେଲା । ଭାଲୁ ଆସିଲା । ଗୋଡ଼ଠୁଁ ମୁଣ୍ଡଯାଏ ଶୁଙ୍ଘିଗଲା । ତା'ପରେ ତା' ବାଟରେ ସେ ଚାଲିଗଲା । ଗଛରେ ଚଢ଼ିଥିବା ସାଙ୍ଗଟି ଗଛରୁ ଓହ୍ଲାଇ ପଡ଼ି ଆର ଜଣକୁ ପଚାରିଲା.. ହଇରେ, ଭାଲୁ ତୋ' କାନ ପାଖରେ ମୁହଁ ରଖି କ'ଣ କହୁଥିଲା ?

ସାଙ୍ଗ ଟିକିଏ ଭାବିଲା । କହିଲା- ''ଭାଲୁ କହିଲା... ଯିଏ ବିପଦରେ ପଡ଼ିଥିବା ବେଳେ ସାଙ୍ଗକୁ ଛାଡ଼ି ଚାଲିଯାଏ, କେବେ ତା' ସାଙ୍ଗରେ ସାଙ୍ଗ ହେବୁନାହିଁ ।''

ଏଇ କଥାଟି ସେତେବେଳେ ଆମ ପାଠ ବହିରେ ଥାଏ । ତେବେ ସିଏ ତ କଥାଟିଏ । କିଏ ମନରୁ ଫାନ୍ଦି ଲେଖିଥିବ । ଅଜା ଯାହା କହିବେ.. ଅଙ୍ଗେନିଭା କଥା । ନିଜେ ଯାହା ଦେଖିଥିବେ, ସେଇଆ କହିବେ । ସେ କଥା ଶୁଣିବାର ମଜା ଅଲଗା ।

ଗଳା ସଫାକରି ଅଜା ଆରମ୍ଭ କଲେ- ସେଥର କେନ୍ଦୁଝର ଯାଉଁ ଯାଉଁ ବାଟରେ ସଂଜ ହୋଇଗଲା । ଆଗରେ ଘଟଗାଁ । ତାରିଣୀ ଠାକୁରାଣୀଙ୍କ ଆସ୍ଥାନ । ମନକଲି, ଆଜି ରାତିରେ ଆଉ ଆଗକୁ ଯିବିନାଇଁ । ବଣ ବାଟ । ବାଘ-ଭାଲୁ-ହାତୀ.. ବାଟରେ କିଏ ହାବୁଡ଼ି ଯିବ କିଏ ଜାଣେ !

ରାସ୍ତାର ଦୁଇପଟେ ଘୋର ଜଙ୍ଗଲ । ମଝିରେ ପାଦ ଚଲା ବାଟ । ସେ କାଳରେ କୋଉ ଗାଡ଼ିମଟର ଚାଲୁଥିଲା! ଦୂରବାଟକୁ ଗଲେ ଶଗଡ଼ ଆଶରା.. ଥିଲା ବାଲା ଲୋକଙ୍କ ପାଇଁ ହାତୀଘୋଡ଼ା କି ସବାରୀ-ପାଲିଙ୍କି । ସଂଜ ହୋଇ ନଥାଏ । ଘଟଗାଁରେ ପହଞ୍ଚିଲି । ଡେଙ୍ଗା ଡେଙ୍ଗା ଶାଳଗଛରେ ଦିନବେଳେ ବି ଅନ୍ଧାର । କେତେ ଜାତିର ଚଢ଼େଇ କିଚିରି ମିଚିରି ହେଉଥାଆନ୍ତି । ଆଉ ଥାଆନ୍ତି ପଲ ପଲ ପାତି ମାଙ୍କଡ଼ ।

ରାସ୍ତା କଡ଼ରେ ଦେବୀଙ୍କ ପୀଠ । ସେତେବେଳେ କୋଉ ମନ୍ଦିର ଥିଲା ! ଗଛ ମୂଳରେ ସେମିତି ଖରା ବର୍ଷାରେ ଦେବୀ ବସିଥାନ୍ତି । ଦେହୁରୀମାନେ ତାଙ୍କର ପୂଜା କରନ୍ତି ।

ହଠାତ୍ ମୋ ଆଖି ଆଗରେ ଘଟଣାଟା ଘଟିଗଲା । ଦେହୁରୀ ଜଣେ ଦେବୀଙ୍କ ପାଖରେ ଦିନସାରା ଭଙ୍ଗା ହୋଇଥିବା ନଡ଼ିଆ ତକ ଗୋଟିଏ ଟୋକେଇରେ ପୂରେଇ ତାକୁ ମୁଣ୍ଡରେ ଥୋଇ ଆସୁଥିଲେ । ଗଛ ଉପରୁ ଓହ୍ଲେଇ ଆସିଲେ ଦୁଇଟା ପାତି । ସେମାନେ ଗଛ ଚଢ଼ିଲା ଭଳି ଦେହୁରୀଙ୍କ ଦେହରେ ଦୁଇପଟରୁ ଚଢ଼ି ଟୋକେଇ ଉପରେ ବସି ପଡ଼ିଲେ ।

ମୁଁ ତ ଦେଖି କାବା ! ଦେହୁରୀ ମୋଟେ ବ୍ୟସ୍ତ ହେଲେ ନାହିଁ । ମୁଣ୍ଡରୁ ଓହ୍ଲେଇ ଟୋକେଇକୁ ତଳେ ଥୋଇଲେ । କିଛି କରିବା ଆଗରୁ ପାତି ଦୁହେଁ, ଦୁଇ ହାତରେ



ଦୁଇଟା ଲେଖାଁ ନଡ଼ିଆ ଫାଳ ଧରି ଚମ୍ପଟ୍ । ମୁଁ ଦେହୁରୀଙ୍କୁ ପଚାରିଲି... ''ତମକୁ ଡର ମାଡ଼ିଲା ନାହିଁ !'' ଦେହୁରୀ ହସିଲେ । କହିଲେ...''କୋଉ ଦିନିକିଆ କଥା ହେଇଚି ! ସବୁଦିନେ ଆମର ଏଇ ପାଲା ।''

ଅଜାଙ୍କ କଥା ଶୁଣି ଆମେ ହସି ହସି ଗଡ଼ିଗଲୁ । ମାଙ୍କଡ଼ ଦି'ଟା ଗଛ ଚଢ଼ିଲା ପରି ମଣିଷ ଉପରେ ଚଢ଼ି ଯାଉଛନ୍ତି । ତାକୁ ଡର ମାଡୁନାହିଁ ? ସଲ ସଲ ଲାଗୁ ନାହିଁ ?

ଅଜା କହିଲେ, ଅସଲ ଘଟଣା ତ ସେଦିନ ରାତିରେ ଘଟିଲା । ସେ କଥା ମନେପଡ଼ିଲେ ଏବେ ବି ମୋ ରୁମ ଟାଙ୍କୁରି ଉଠୁଚି ।

ଆମେ ସବୁ ଆଗ୍ରହରେ ଅଜାଙ୍କ ଆଡ଼କୁ ଅନାଇଲୁ ।

ଅଜା କହିଲେ- ରାତି ରହଣି ସେଇଠି । ଦେହୁରୀମାନେ ବି ମନାକଲେ । ବାଟରେ କିଛିଦିନ ହେବ ବାଘଟାଏ ‌‌ ‌ ‌ ତିଛି... ରାତିରେ ଯିବା ଠିକ୍ ହେବନାହିଁ । ଏଠି ଅସୁବିଧା କିଛି ନାହିଁ । ଘର ଅଛି । ରାତି ଖାଇବା ପାଇଁ ପ୍ରସାଦ ମିଳିଯିବ । ସେମାନେ ବି ରହିବେ ଏଇ ଆଖପ ‌ ରେ । ରାତିଟାର କଥା । ଚଳିଯିବ.... ।

ରହିଲି । ଘରଟି ଯାହା ମିଳିଲା... ତାଳପତ୍ରରେ ତା'ର କାନ୍ଥ । ମୁଣ୍ଡ ଉପରେ ପତ୍ର ଛାଆଣି । ଦି'ହାତ ଚଉଡ଼ା ତିନି ହାତ ଉଚ୍ଚ ମେଲା ଖଣ୍ଡେ- ଘର ଭିତରକୁ ଯିବାକୁ । ତାଳପତ୍ରର ତାଟି ଖଣ୍ଡେ ଆପଟ କରିବାକୁ । ଯାହା ହଉ... ଥକ୍କା ଲାଗୁଥିଲା । ଶୋଇପଡ଼ିଲି... ନିଦ ବି ଲାଗିଗଲା ।

ବୁଝିଲନା... ରାତି ଅଧ ହୋଇଥିବ ପରା... ନିଦ ଭାଙ୍ଗିଗଲା... ନାକରେ କେମିତି ଗୋଟାଏ ବିଚି କିଟିଆ ଗନ୍ଧ ବାଜିଲା... ଏଁ, ଏକି ଗନ୍ଧ ?

ପାଦରେ କ'ଣ ଗୋଟାଏ ସଲ ସଲ, ନରମ-ନରମ... ରୁମ ରୁମିଆଁ.. ଅନ୍ଧାରରେ କିଛି ଦେଖାଯାଉ ନାହିଁ- ସାପ ନା କ'ଣ ! ସାପର ରୁମ ଆସିବ କୁଆଡୁ ? ଆସ୍ତେ ଆସ୍ତେ ପାଦକୁ ଓଟାରି ନେଇ ଆଣ୍ଠୁକୁ ପେଟରେ ମାଡ଼ିଦେଲି । ନିଃଶ୍ୱାସ ବନ୍ଦ ।

ଝାଳ ବୋହି ଯାଉଥାଏ । ଘରଯାକ ଶୁଣାଗଲା... ଖସର ଖସର ଗାଉଁ ଗାଉଁ ଶବ୍ଦ । ସେଇଠୁ ଗୋଟାଏ ବିକଟାଳ ବୋବାଳି... ଦି'ଟା ଜନ୍ତୁ ଯେମିତି ଭିଣାଭିଣି କାମୁଡ଼ା କାମୁଡ଼ି ହଉଛନ୍ତି ଭାଡ଼ିତଳେ ।

ଘର ଭିତରେ ଭାଡ଼ି ଉପରେ ମୁଁ । ତଳେ ଭାଲୁ । ଏଥର ମନେପଡ଼ିଲା.. ମୋ ବୁଢ଼ୁଳାରେ ଆମ ବାରିର ପହିଲା ନମ୍ବରର ମଇଁଷି ମୁଣ୍ଡିଆ ପାଚିଲା ଆମ୍ବ । ଟାକୁଆ ଛୋଟ ଖାଲି ମାଉଁସ ଥଲ ଥଲ । ଟିକିଏ ବି ଚେର ନାହିଁ, ବାସନାରେ ପେଟ ପୂରିଯିବ ।

ଗଡ଼ଜାତରେ ଜାତିଆ ଆମ୍ବ ମିଳେ ନାହିଁ । ଗୁରୁଡି ବେଶୀ.. ଟାକୁଆଟା ମାନ ଏଡ଼େ ଏଡ଼େ । ନା ରସ ନା ମିଠା । ଘରୁ ବୋଉ ଦେଇଥାଏ କୋଡିଏ ପଚିଶଟା ସେଇ ଆମ୍ବ । ତା'ରି ବାସନାରେ ଟାଣିହୋଇ ଭାଲୁ ଘରେ ପଶିଛନ୍ତି । ସେଇଆକୁ ଖାଇ ଯାଉଛନ୍ତି ।

ଖାଆନ୍ତୁ । ଏଡ଼େ ଏଡ଼େ ଦି'ଟା ଭାଲୁ । ସେଥିରୁ ଗୋଟାଏ ଯଦି ଖଟ ଉପର ଟିକିଏ ଅଣ୍ଡାଳି ପକାଇବ, ତେବେ ତ ମୋ କଥା ସରିଲା... ମୁଁ ଆଖିବୁଜି ଭଗବାନଙ୍କୁ ଡାକୁଥାଏ ।

ହଠାତ୍ ମୋର ମନେ ପଡ଼ିଲା, ଭାଲୁର ନିଆଁକୁ ପ୍ରାଣେ ଡର ।

ବିଡ଼ିଟଣା ଅଭ୍ୟାସ ଥାଏ । ମୁଣ୍ଡ ଉପରେ ବିଡ଼ିକଠା- ଦିଆସିଲି । ମୁଁ ସାହସ ବାନ୍ଧିଲି । ଯାହା ହବ ହେଉ । ମୁଣ୍ଡରୁ ଗାମୁଛା ଖଣ୍ଡକ ଫିଟେଇ ଆସ୍ତେକରି କାଠିଟାଏ ଘଷିଦେଲି । ଭାଗ୍ୟ ଭଲ । ଗାମୁଛାରେ ନିଆଁ ଧରିଗଲା । ଭାଲୁଙ୍କର ଖାଇବା ବନ୍ଦ ହୋଇଗଲା... ସେମାନେ ନିଆଁ ପାଖରୁ ଦୂରେଇ ଗଲେ । ଏତେବେଳକୁ ନିଆଁ ବି ଜୋରରେ ଜଳିଲାଣି... ମୁଁ ସେଇଆକୁ ହଲେଇଲି.. ଭାଲୁ ଆଉରି ପଛେଇଲେ । କେତେବେଳ ଯାଇଚି କେଜାଣି.. ହଠାତ୍ ବାହାରୁ ପାଟି ଶୁଭିଲା... ବାଡ଼ିରେ ତଳକୁ ପିଟି ପିଟି.. ମୁହଁରେ ପାଟିକରି ଲୋକମାନେ ଦୌଡ଼ି ଆସିଲେ । ସେମାନେ ନିଆଁ ଦେଖି ଆସିଛନ୍ତି । ବଣୁଆ ଲୋକ । ତାଙ୍କର କୋଉ ଡର ନା ଭୟ । ଭାଲୁ ଦି'ଟାଙ୍କୁ ଘଉଡ଼େଇ ଦବାକୁ ବେଶୀ ବେଳ ଲାଗିଲା ନାହିଁ ।

ଭାଲୁ ସିନା ମଣିଷ ମାରେ ନାହିଁ । ତେବେ ଖଣ୍ଡିଆ ଖାବରା କରି ମଣିଷକୁ ଅକାମୀ କରିଦିଏ । ମୋର ଆୟୁଷ ଥିଲା । ଆଉ ଥିଲା ଦମ୍ଭ... ବିପଦରେ ପଡ଼ି ଯିଏ ସାହସ ନ ହରାଏ, ତା'ର କିଏ କ'ଣ କରିବ ? ବୁଝିଲରେ ? ❑

**ହାରାମଣି ନିବାସ, ଦେଉଳ ସାହି, କଟକ**

# ସେନା ଶିବିରରେ ରାଖୀ

• ବାଇଧର ନାୟକ

ସେନା ଶିବିର ଭିତରେ ଶୋଇଥାଏ ସିପାହୀ ବସନ୍ତ ମହାପାତ୍ର । ଜଣେ ଫଉଜୀ ବସନ୍ତ ବାବୁଙ୍କୁ ଡାକି ଖଣ୍ଡେ ଲଫାଫା ବଢ଼ାଇ ଦେଲା ।

ସିପାହୀ ବସନ୍ତ ମହାପାତ୍ର ଲଫାଫାଟିକୁ ଦେଖିଲେ । ଖୁବ୍ ବଡ଼ ଖୋଳଟାଏ । ପୁଣି ରେଜେଷ୍ଟ୍ରି ଡାକରେ ଆସିଛି । ବସନ୍ତବାବୁ ଦେଖିଲେ ତାଙ୍କ ଟିକି ଭଉଣୀ ରଶ୍ମି ପଠାଇଛି । ବିଳମ୍ବ ନକରି ଲଫାଫା ଖୋଲିଲେ । ଦେଖିଲେ, ତା ଭିତରେ କାଗଜରେ ତିଆରି ସୁନ୍ଦର ସୁନ୍ଦର ରାଖୀ ଗୁଡ଼ିଏ ଅଛି । ନାଲି, ନୀଳ, ହଳଦିଆ, ଗୋଲାପି ରଙ୍ଗରେ ରାଖୀ ହୋଇଛି । ପ୍ରତ୍ୟେକ ରାଖୀର ମଝିରେ ଲେଖା ଯାଇଛି 'ଜବାନ ଭାଇଙ୍କୁ ରାଖୀ' ।



ହଠାତ୍ ସୈନ୍ୟ ଶିବିର ଆନନ୍ଦ ମୁଖର ହୋଇ ଉଠିଲା । କାରଣ ରଶ୍ମି ସବୁ ଜବାନ ଭାଇମାନଙ୍କ ପାଇଁ ଶହ ଶହ ରାଖୀ ପଠାଇଛି । ଶିବିରରେ ଥିବା କମାଣ୍ଡର ବସନ୍ତକୁ ପଚାରିଲେ- ''ତୁମ ଭଉଣୀ, ତୁମ ପାଖକୁ ଗୋଟିଏ ରାଖୀ ନ ପଠାଇ, ଏତେଗୁଡ଼ିଏ ରାଖୀ ପଠାଇଛନ୍ତି କାହିଁକି ?

ବସନ୍ତ କହିଲା- ''ସାର ! ରଶ୍ମିର ଚିଠି ପଢ଼ିଲେ ମୁଁ କହି ପାରିବି । ତେଣୁ ମୁଁ ତା ଚିଠି ପଢୁଛି ଶୁଣନ୍ତୁ । ସିଏ ଲେଖିଛି- ଭାଇ, ମୋ ପ୍ରଣାମ ନେବ,

ସାରା ଭାରତର ଜବାନ ଭାଇଙ୍କୁ
ମୋ ଟିକି ଜୁହାର ଦେବ... ।
ସୀମାନ୍ତରେ ଯେତେ ଅଛନ୍ତି ଜବାନ ଭାଇ
ସଭିଙ୍କ ହାତରେ ରାଖୀ ପିନ୍ଧାଉଛି
ଓଡ଼ିଶା ରାଇଜେ ରହି... ।
ସଭିଙ୍କୁ ମୋ ରାଖୀ ଦେବ
ରାଖୀ ବାନ୍ଧିଦେଲେ ଜବାନ ଭାଇଙ୍କ
ମନରେ ସାହସ ହେବ.... ।
ଏଇ ମୋ କାଗଜ ରାଖୀ
ଆଦରରେ ଭାଇ ହାତରେ ପିନ୍ଧିବ
ରହୁଛି ମୁଁ ତୁମ ରଶ୍ମି.....।

ବସନ୍ତର ଚିଠି ଶୁଣି ସବୁ ଜବାନ ଭାଇ ଆନନ୍ଦରେ ହସି ଉଠିଲେ । ରଶ୍ମି ପଠାଇଥିବା କାଗଜ ରାଖୀକୁ ସମସ୍ତେ ଗୋଟିଏ ଗୋଟିଏ ନେଇ ଯାଇଥିଲେ । କମାଣ୍ଡର ମହାଶୟ କହିଲେ- ''ଖୁବ୍ ଆନନ୍ଦର କଥା ଯେ ଭାରତର ସାନ ଝିଅଟିଏ, ତା ଜବାନ ଭାଇକୁ ସାହାଯ୍ୟ ସହଯୋଗ କରୁଛି । ଧନ୍ୟ ସେହି ଟିକି ଝିଅର ରାଖୀ । ରଶ୍ମିର କାଗଜ ରାଖୀ ସେନା ଶିବିରକୁ ଆନନ୍ଦ ମୁଖର କରିଦେଇଛି । ❑

ପରମାନନ୍ଦପୁର, ବାହାବଳପୁର, ତିହିଡି, ଭଦ୍ରକ

# ରାମ ହାକିମ ହେଲା

● ବୀରେନ୍ଦ୍ର କୁମାର ବାରିକ

ମଣିପୁର ଗାଁରେ ହାଡ଼ିବନ୍ଧୁଙ୍କର ଘର । ଘରେ ତାଙ୍କର ସ୍ତ୍ରୀ ଓ ଗୋଟିଏ ବୋଲି ପୁଅ, ନାଁ ତାର ରାମ । ଗରିବ ଘରର ପୁଅ ସେ । ବାପା ତାର ନିତି ମୂଲଲାଗି ଯାହା ମଜୁରି ଆଣନ୍ତି ସେଥିରେ ଦୁଃଖେ ସୁଖେ ଚଳି ତା'କୁ ପାଠ ପଢ଼ାନ୍ତି । ସିଏ ବି ଘରେ ଖଟା ପଖାଳ ଖାଇ ଗାଁ ସ୍କୁଲରୁ ମାଟ୍ରିକ ପାଶ୍ କଲା । ତା'ର ଇଚ୍ଛା ସେ କଲେଜରେ ପଢ଼ିବ । ହାଡ଼ିବନ୍ଧୁ ପୁଅର ମନକଥା ବୁଝିପାରି ରାମକୁ ବୁଝେଇଲେ । କହିଲେ, ପୁଅରେ ! ତୁ ତ ଜାଣୁ ଆମେ ଗରିବ । ମୂଲ ଆମର ଭରସା । ତାଛଡ଼ା ଦିନେ ମୂଲ ନଲାଗିଲେ ଦି'ଓଳି ଯାକ ଉପାସରେ ରହିବାକୁ ହେବ । ଏପରି ଅବସ୍ଥାରେ ମାଗିଯାଚି ତୋତେ ମାଟ୍ରିକ ପଢ଼େଇଲି । ଯେତିକି ପଢ଼ିଲୁ ସେତିକି ଆମର ଯଥେଷ୍ଟ । ଆଉ ବାବା ! କଲେଜ ପଢ଼େଇବାକୁ ମୋର ବଳ ନାହିଁ ।



ବାପାଙ୍କର କଥା ରାମ ମନକୁ ପରିବର୍ତ୍ତନ କରିପାରିଲା ନାହିଁ । ତା'ର ଗୋଟିଏ ଲକ୍ଷ୍ୟ । ସେ ଯେମିତି ହେଉ କଲେଜରେ ପଢ଼ି ବଡ଼ ଚାକିରି କରିବ । ଆଉ ବାପା ମାଆଙ୍କର ନାଁ ରଖିବ । ମନକଥା ମନରେ ଥାଏ । ଶେଷକୁ ଦିନେ କାହାକୁ କିଛି ନକହି ଗୋଟିଏ ଥଳିରେ ତା'ର ଚିରା ଫଟା ଜାମା ପେଣ୍ଟ ଓ



ମାଟ୍ରିକ ପାଶ୍ କରିଥିବା ପ୍ରମାଣ ପତ୍ର ଇତ୍ୟାଦି ଧରି ସିଏ ବାହାରି ପଡ଼ିଲା । ବେଳ ବୁଡ଼ିଲା ବେଳକୁ ସିଏ ଯାଇ ପହଞ୍ଚିଲା ଗୋଟିଏ ରେଳ ଷ୍ଟେସନରେ । ଷ୍ଟେସନ ସାରା ଲୋକ ଭିଡ଼ । ଚିହ୍ନା ପରିଚୟ କେହି ନାହାଁନ୍ତି । କାହାକୁ ବା ତା'ର ମନ କଥା କହିବ । ଏଣେ ଭୋକରେ ପେଟ ଜଳୁଚି ତ ଶୋଷରେ ତଣ୍ଟି ଶୁଖି ଅଠା ଅଠା ହେଲାଣି । ପାଖରେ କାଣିକଉଡିଟିଏ ବି ନାହିଁ । ଖାଇବ କ'ଣ ! ଏମିତି ଭାବୁ ଭାବୁ ଲୁହ ଜକେଇ ଆସିଲା ତା'ଆଖିରେ । ଶେଷରେ

କିଛି ବାଟ ନପାଇ କଳରୁ ପେଟେ ପାଣି ପିଇ ସିଏ ବସି ରହିଲା ଚୁପ୍ ଚାପ୍ । ବସି ବସି କେତେ କ'ଣ ଭାବି ଚାଲିଥାଏ । ଠିକ୍ ଏତିକିବେଳେ ତା'ରି ବୟସର କିଛି ପିଲା କୁଲିକାମ କରୁଥିବାର ସେ ଦେଖିବାକୁ ପାଇଲା । ମନରେ ଟିକେ ସାହସ ହେଲା ତା'ର । ଭାବିଲା, ଏମାନେ ଯଦି ଖୁସି ମନରେ ପେଟ ପାଇଁ କୁଲିକାମ କରି ପାରୁଛନ୍ତି- ମୁଁ ବା କାହିଁକି ପାରିବି ନାହିଁ ? ତା'ପରେ ସିଏ ଛାତିକୁ ଦମ୍ଭ କଲା । ଭଲ ମନ୍ଦ କିଛି ନ ବାଛି ମିଶିଗଲା କୁଲିକାମ କରୁଥିବା ପିଲାମାନଙ୍କ ସହିତ । ସକାଳରୁ ସଞ୍ଜଯାଏ କରି ଚାଲିଲା କୁଲି କାମ । ଯିଏ ଯାହା ଖୁସିରେ ତା'କୁ ଦେଲେ, ସିଏ ସେଥିରେ ଖାଇ ପିଇ ନିତି ରାତିହେଲେ ବସି ପାଠ ପଢ଼ିଲା ଷ୍ଟେସନର ଗୋଟିଏ କୋଣରେ । କୁଲିକାମ କରିବା ତା'ର ନିତିଦିନିଆ କାମ ହେବା ସଙ୍ଗେ ସଙ୍ଗେ ଷ୍ଟେସନ ବି ତା'ର ନିଜର ଘର ହୋଇଗଲା ।

ଏମିତି କିଛିଦିନ ବିତିଗଲା । ସବୁଦିନ ପରି ସେଦିନ ରାତିରେ ରାମ ବସି ପଢୁଥାଏ । ଏହି ସମୟରେ କିଏ ଡାକିବା ଶୁଣି ସିଏ ପଢ଼ା ବନ୍ଦ କରି ଆଗକୁ ଚାହିଁଲା । ଜଣେ ଭଦ୍ରଲୋକ ତା'ଆଗରେ ଛିଡ଼ାହୋଇଛନ୍ତି । ତାଙ୍କୁ ଦେଖି ରାମ ଭୟରେ ଥରିବାକୁ ଲାଗିଲା । ଭଦ୍ରଲୋକ ଜଣକ ତା'ପାଖରେ ବସିପଡ଼ି ହସି ହସି କହିଲେ, ମୁଁ ଜଣେ କଲେଜ ଅଧ୍ୟକ୍ଷ, ନିତି ଏଇ ବାଟ ଦେଇ କଲେଜ ଗଲାବେଳେ ତୁମକୁ ଦିନରେ କୁଲିକାମ ଓ ରାତିରେ ପଢୁଥିବାର ଦେଖୁଛି । ଆଚ୍ଛା କହିଲ, ତୁମର କ'ଣ ଘରଦ୍ୱାରା ବୋଲି କିଛି ନାହିଁ ? ଭଦ୍ରଲୋକଙ୍କର ପ୍ରଶ୍ନ ଶୁଣି ରାମ କହିଲା, ହଁ ସାର । ତେବେ ଷ୍ଟେସନରେ ତୁମେ ଅନାଥପରି ପଡ଼ିରହିଛି କାହିଁକି ? ଟିକେ ଚଡ଼ା ଗଳାରେ ପୁଣି ପଚାରିଲେ କଲେଜ ଅଧ୍ୟକ୍ଷ ମୁରଲୀବାବୁ । କି ଉତ୍ତର ଦବ ଭାବି ଭାବି ରାମର ଆଖି ଛଳ ଛଳ ହୋଇ ଆସିଲା । ସେ ପିଲାଙ୍କ ଭଳି ଖାଲି ଧକେଇ ଧକେଇ କାନ୍ଦିବାରେ ଲାଗିଲା । ତା'ର ପିଠି ଥାପୁଡ଼େଇ ଥାପୁଡ଼େଇ ତା'କୁ ସାନ୍ତ୍ୱନା ଦେଇ ସବୁକଥା ପଚାରି ବୁଝିନେଲେ ମୁରଲୀବାବୁ । ତା'ପରେ ସିଏ ଦେଖିଲେ, ପିଲାଟି ଭାରି ଧୀର ଆଉ ନମ୍ର । ତା'ର କଲେଜରେ ପଢ଼ିବା ପାଇଁ ମନଥିବା ଜାଣି ତା'କୁ ନିଜ

ଘରକୁ ନେଇଗଲେ । ଘରେ ରାମର ରହିବା ଓ ଖାଇବା ପାଇଁ ସବୁ ସୁବିଧା କରିଦେଇ ତା'ପରଦିନ ନିଜ କଲେଜରେ ରାମର ନାଁ ମଧ ଲେଖିଦେଲେ । ରାମ ମନ ଭାରି ଖୁସି । ସିଏ ଖିଆ ପିଆ ଭୁଲି ମନଦେଇ ପାଠ ପଢ଼ିଲା । ତାପରେ ଦିନ ରାତି, କଠିନ ପରିଶ୍ରମ କରି ଉଚ୍ଚ ଶିକ୍ଷା ପାଇଁ ନିଜକୁ ପ୍ରସ୍ତୁତ କରିବାରେ ଲାଗିପଡ଼ିଲା । ତା'ର ବ୍ୟବହାର ଓ ଚାଲିଚଳନରେ ସମସ୍ତେ ତା'କୁ ସ୍ନେହ ଆଦର କଲେ । ବିଶେଷ କରି ତା'ର ମଧୁର ବଚନ ଏବଂ ବିନୟ ଭାବ ପାଇଁ ସିଏ ସମସ୍ତଙ୍କର ଆପଣାର ହୋଇଗଲା ।

ଶେଷରେ ସତକୁ ସତ ରାମର ଭାଗ୍ୟ ବଦଳିଗଲା । ତା'ର ମନର ଦୃଢ଼ତା, ଆତ୍ମବିଶ୍ୱାସ ଓ ଗୁରୁଜନମାନଙ୍କଠାରେ ପ୍ରଗାଢ଼ ଭକ୍ତିଭାବ ଥିବାରୁ ସିଏ କୃତିତ୍ୱର ସହ କଲେଜରୁ ପାଶ୍ କରି ''ହାକିମ'' ହେଲା । ମାସକୁ ମାସ ମୁଠା ମୁଠା ଟଙ୍କା ରୋଜଗାର କରି ନିଜେ ସୁଖ ଶାନ୍ତିରେ ରହିବା ସଙ୍ଗେ ସଙ୍ଗେ ବାପା ମାଆଙ୍କୁ ବି ଖୁବ୍ ଆନନ୍ଦରେ ରଖିଲା । ରାମ ହାକିମ ହେବା କଥା ଶୁଣି ସାହି ପଡ଼ିଶାର ଲୋକମାନେ ତା'କୁ ଭାରି ପ୍ରଶଂସା କରି କହୁଥିଲେ, ଯାହାହେଉ, ଏତେଦିନ ପରେ ରାମ ପରିଶ୍ରମର ଫଳ ପାଇଲା । ସବୁରି ମୁହଁରେ ରାମର ପ୍ରଶଂସା ଶୁଣି ମୁରଲୀ ବାବୁ ମନକୁ ମନ ଭାବୁଥିଲେ, ସତରେ, ବହୁ ଅସୁବିଧା ଭିତରେ ରାମ ପାଠ ପଢ଼ି କୁଲିରୁ ହାକିମ ହେଲା । କିନ୍ତୁ ସମସ୍ତେ ଯଦି ଆମ ସମାଜରେ ଥିବା ରାମଭଳି ଗରିବ ପିଲାମାନଙ୍କୁ ପଢ଼ିବାପାଇଁ କିଛି କିଛି ସାହାଯ୍ୟ କରନ୍ତେ ତାହେଲେ କଳକାରଖାନରେ ଆଜି ଏତେ ଶିଶୁଶ୍ରମିକମାନଙ୍କର ଦେଖା ମିଳନ୍ତା ନାହିଁ । ■

ୟୁ.ଏବ୍.ଆଇ , କଟକ

# ବାଘର ଶପଥ

● ରାଜଲକ୍ଷ୍ମୀ ଦାଶ

ଅନେକ ଦିନ ତଳର କଥା । ଗୋଟିଏ ବଣରେ ଅନେକ ଗୁଡ଼ିଏ ପଶୁପକ୍ଷୀ ଥାଆନ୍ତି । କିନ୍ତୁ ସେ ବଣରେ ବାଘ ସିଂହ ନଥାନ୍ତି । ଥରେ ସେହି ବଣକୁ ଲମ୍ବଜିହ୍ୱ ବୋଲି ଗୋଟିଏ ବାଘ ହଠାତ୍ ପଶି ଆସିଲା ଓ ପଶୁ ଶିକାର କରି ମାଂସ ଖାଇବା ଆରମ୍ଭ କରିଦେଲା । ଏହିଭଳି କିଛିଦିନ ଅତିବାହିତ ହେବାପରେ



ବାଘ ଲମ୍ୱ ଜିହ୍ୱକୁ ଆଉ ଭଲ ଲାଗିଲା ନାହିଁ । ସେ ବା ଏକୁଟିଆ ଆଉ କେତେଦିନ ରହିଥାଆନ୍ତା ? ତେଣୁ ସେ ସାଙ୍ଗ ଖୋଜିବା ପାଇଁ ବଣସାରା ବୁଲିବାକୁ ଲାଗିଲା । ଅନେକ ପଶୁପକ୍ଷୀଙ୍କୁ ମଧ କଥା ହେବା ପାଇଁ ଡାକିଲା । ବାଘ ପାଖକୁ କିଏ ବା ଆସିବ । ବାଘକୁ ଦେଖିବା ମାତ୍ରକେ ସମସ୍ତେ ଭୟରେ ଦୌଡ଼ି ଚାଲିଯାଉଥାନ୍ତି । ତେଣୁ ବାଘ ମନରେ ଭୀଷଣ ଦୁଃଖ ହେଲା । ସେ ସାଙ୍ଗଟିଏ ଖୋଜି ଖୋଜି ପାଇଲା ନାହିଁ । ଦିନେ ଲମ୍ୱଜିହ୍ୱ ପୋଖରୀକୁ ପାଣି ପିଇବା ପାଇଁ ଯାଇଥାଏ । ସେ ଦେଖିଲା କଙ୍କଡ଼ାଟିଏ ଓ ମାଛଟିଏ ପୋଖରୀ କୂଳରେ ବସି କେତେ ହସ ଖୁସିରେ କଥାବାର୍ତ୍ତା ହେଉଥାନ୍ତି । ବାଘଟି ସେମାନଙ୍କ ପାଖକୁ ଗଲା ଓ ବନ୍ଧୁତା ସ୍ଥାପନ କରିବା ପାଇଁ ଅନେକ କାକୁତି ମିନତି ହୋଇ କହିଲା । ମାଛ ଓ କଙ୍କଡ଼ା ବାଘକୁ ମନା କରନ୍ତେ ବା କାହିଁକି ? ସେ ଦୁହେଁ ବାଘର ପ୍ରସ୍ତାବରେ ରାଜି ହୋଇଗଲେ । ସେହି ଦିନଠାରୁ ତିନିଜଣଯାକ ମହା ଆନନ୍ଦରେ ସୁଖ ଦୁଃଖ, ହସ ଖୁସିରେ ସମୟ କଟାଇବାକୁ ଲାଗିଲେ ।

ଏମିତି କିଛିଦିନ ଗଲା । ଦିନକର ଘଟଣା । ତିନି ସଙ୍ଗାତ ବସି କଥାବାର୍ତ୍ତାରେ ମଜ୍ଜିଯାଇଥାନ୍ତି । ଗୋଟିଏ ମଣିଷ ସେଇ ପୋଖରୀକୁ ପାଣି ପିଇବାକୁ ଆସିଲା । ମଣିଷକୁ ଦେଖିମା ମାତ୍ରେ ମାଛ ଓ କଙ୍କଡ଼ା ତତ୍‌କ୍ଷଣାତ୍ ପାଣି ମଧରେ ନିଜକୁ ଲୁଚାଇ ଦେଲେ । ବାଘ ଏସବୁ କଥା କିଛି ବୁଝିପାରିଲା ନାହିଁ । ସେ ଆଶ୍ଚର୍ଯ୍ୟ ହୋଇ କେବଳ ଚାରିଆଡ଼କୁ ଚାହୁଁଥାଏ । ବାଘକୁ ଦେଖି ମଣିଷ ମଧ ଭୟରେ ଚାଲିଗଲା । ବାଘ ମଣିଷକୁ ଦେଖିପାରିଲା ନାହିଁ । ମଣିଷ ଚାଲିଯିବା ପରେ ମାଛ ଓ କଙ୍କଡ଼ା ଆସି ଲମ୍ୱଜିହ୍ୱ ନିକଟରେ ପହଞ୍ଚିଲେ । ବାଘ ସେ ଦୁହିଁଙ୍କୁ ଆଦର କରି ପଚାରିଲା, ସଙ୍ଗାତେ, ତୁମେ ଦୁହେଁ କାହିଁକି ଚାଲିଗଲ? ବାଘ କଥା ଶୁଣି କଙ୍କଡ଼ା କହିଲା– ସଙ୍ଗାତ, ଏ ପୋଖରୀକୁ ଯେଉଁ ମଣିଷଟି ଆସିଥିଲା ସେ ଭାରି ନିଷ୍ଠୁର । ମୋତେ ଦେଖିବା ମାତ୍ରେ ଧରିନେଇ ମୋର ବଡ଼ ବଡ଼ ଗୋଡ଼ ଦୁଇଟାକୁ ରଡ଼ ମଡ଼ କରି ଭାଙ୍ଗି ଦେଇଥା'ନ୍ତା ।

କଙ୍କଡ଼ା କଥା ସରିବା ପରେ ମାଛଟି ମଧ କାନ୍ଦିକାନ୍ଦି କହି ଉଠିଲା– ସଂଗାତ, ଏ ମଣିଷ ମୋର ବଂଶ ମାରିଦେଇ ସାରିଲାଣି । ସେ ମୋତେ ଦେଖିଥିଲେ କ'ଣ ଛାଡ଼ିଥାଆନ୍ତା ? ମୋତେ ଧରିନେଇ ମୋ ମୁଣ୍ଡକୁ ଛେଚି ଛେଚି ମାରିଦେଇଥା'ନ୍ତା । ଏକଥା କହିବାବେଳେ ମାଛ ଓ କଙ୍କଡ଼ା ଭୀଷଣ

ଭାବରେ ଥରୁଥା'ନ୍ତି । ଦୁଇ ସଙ୍ଗାତଙ୍କ କଥା ଶୁଣି ବାଘର ମଣିଷ ଦେଖିବାକୁ ଆଗ୍ରହ ହେଲା । ରାଗ ମଧ ଲାଗିଲା । ତେଣୁ ସେ ବଣ ମଧରେ ଗୋଟିଏ ଛକ ଯାଗା ଦେଖି ଛକି ବସିଲା । ସେ ମଣିଷ ଦେଖିବ । ସେ ତ ଆଗରୁ କେବେ ମଣିଷ ଦେଖି ନଥିଲା । ତେଣୁ ସେ ରାସ୍ତା ଦେଇ ଯିଏ ଆସିଲା ତା'କୁ ତୁ ମଣିଷ କି ବୋଲି ପଚାରିଲା । ସମସ୍ତେ ମନାକରି ଦେଇଗଲେ । କିଛିଦିନ ପରେ ଗୋଟିଏ ଛୋଟା ଲୋକ ସେ ରାସ୍ତାରେ ଆସିଲା । ବାଘ ତାକୁ ତୁ ମଣିଷ କି ବୋଲି ପଚାରିଲା । ଛୋଟା ଲୋକଟି ବାଘକୁ ଦେଖି ଡରି ଡରି କହିଲା ମୁଁ ଯଦି ମଣିଷ ହୋଇଥା'ନ୍ତି, ଏମିତି କ'ଣ ଛୋଟେଇ ଛୋଟେଇ ଚାଲୁଥା'ନ୍ତି ? ଏଣୁ ମୁଁ ମଣିଷ ନୁହେଁ । ବାଘ ତାକୁ ଛାଡ଼ିଦେଲା । ତା'ର କିଛିଦିନ ପରେ ବୁଢ଼ା ଭିକାରିଟିଏ ଆସିଲା ଓ ବାଘ ମଧ ତାକୁ ପୂର୍ବପରି ପ୍ରଶ୍ନ ପଚାରିଲା । ବୁଢ଼ା ଲୋକଟି କହିଲା, ପଶୁରାଜ, ମୁଁ ଯଦି ମଣିଷ ହୋଇଥା'ନ୍ତି, ତାହାହେଲେ କ'ଣ ଏମିତି ଭିକ୍ଷା ମାଗୁଥାଆନ୍ତି । ଏଣୁ ମୁଁ ମଣିଷ ନୁହେଁ । ବାଘ ତାକୁ ଛାଡ଼ିଦେଲା । ବାଘର ମଣିଷ ଦେଖିବାର ଆଗ୍ରହ ଦିନକୁ ଦିନ ବଢ଼ିଯାଉଥାଏ । ହଠାତ୍ ଦିନେ ସେହି ରାସ୍ତା ଦେଇ ଜଣେ ଶବର ଆସିଲା । ତା' ହାତରେ ଧନୁଶର । ମୁଣିରେ ମୁନିଆ ପଥର । ତା'କୁ ଦେଖିବା ମାତ୍ରେ ବାଘ ତା' ସାମ୍ନାକୁ ଧାଇଁ ଆସି ପଚାରିଲା, ଭାଇ ! ତୁ ମଣିଷ କି ? ହଁ ମୁଁ ମଣିଷ କହିବା କ୍ଷଣି ବାଣୁଆ କାଳବିଳମ୍ବ ନ କରି ଧନୁରେ ତୀର ଯୋଖି ବାଘ ଉପରକୁ ଛାଡ଼ିଦେଲା । ତୀରଟି ଯାଇ ବିଚରା ଲମ୍ବଜିହ୍ବର ଆଗ ଗୋଡ଼ରେ ବାଜିଲା । ବାଘଟି ଯନ୍ତ୍ରଣାରେ ଛଟପଟ ହୋଇ ପ୍ରାଣ ବିକଳରେ ବଣ ଭିତରକୁ ଧାଇଁଲା । ଆଉ ସେହିଦିନ ଠାରୁ ବାଘ ମଣିଷର ନିଷ୍ଠୁରତା ଗୁଣ ଭଲଭାବରେ ବୁଝିପାରିଲା । ତେଣୁ ସେ ସ୍ଥିର ହୋଇ ରହିପାରିଲା ନାହିଁ । ପାଖ ପାଖ ବଣର ସମସ୍ତଙ୍କୁ ଡାକି ତା'ର ଅବସ୍ଥା ଦେଖାଇଲା । କହିଲା ମୋର କୌଣସି ଦୋଷ ନାହିଁ । ମୁଁ ମଣିଷକୁ ଭାଇ ବୋଲି ଡାକିବା ବେଳେ ସେ ମୋତେ ମାରି ଛୋଟା କରିଦେଲା । ଏଣୁ ଆଜିଠାରୁ ମୁଁ ମଣିଷକୁ ମୋର ଶତ୍ରୁ ବୋଲି ଧରିନେଲି । ଆମର ଶତ୍ରୁ ଏଇ ନିର୍ଦ୍ଦୟ ମଣିଷ । ତା'କୁ ଦେଖିବା ମାତ୍ରେ ଖାଇଯିବା । ସେହିଦିନ ଠାରୁ ବାଘ ଓ ମଣିଷ ଭିତରେ ଶତ୍ରୁତା ବଢ଼ିଲା । ବାଘ ମଣିଷକୁ ଖାଇଲା । ■

**ଅର୍ଥବିଭାଗ, ସଚିବାଳୟ, ଭୁବନେଶ୍ୱର**